# ଅମର ଚରିତ



ଋଷି ଖୁଣ୍ଟିଆ

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲିଃ

# ଗୃହି ଖୁଣ୍ଟିଆ

ଲେଖକ

ଶ୍ରୀ ସଦାଶିବ ରଥ ଶର୍ମା

ଦୈବେଷକ, ପୁରୀ

---

ପ୍ରଥମ ମୁଦ୍ରଣ

ପ୍ରକାଶକ

ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ

ବ୍ରହ୍ମପୁର : କଟକ : ସମ୍ବଲପୁର

୧୯୫୪

ଛଅ ଅଣା

# ଚାଷି ଖୁଣ୍ଟିଆ



ଭାରତର ଯେଉଁ ଲୋକଶକ୍ତିମାନେ ଇଂରେଜ ଆଗମନର ପ୍ରତିରୋଧ କରି ଆପଣାର ସ୍ୱାଧୀନ ଦେଶକୁ ବିଧର୍ମୀ ହାତକୁ ନ ଦେବାରେ ଅଗ୍ରଣୀ ହୋଇଥିଲେ, ସେମାନଙ୍କ ମଧ୍ୟରେ ଉତ୍କଳୀୟ-ମାନଙ୍କର ସ୍ଥାନ ସର୍ବୋଚ୍ଚରୁ ଉଚ୍ଚରେ । କାରଣ ପ୍ରଥମେ ଭାରତର ମୁଖ୍ୟ ଅଞ୍ଚଳମାନ ବ୍ରିଟିଶର ଅଧୀନତା ସ୍ୱୀକାର କରିଥିଲେ ମଧ୍ୟ ଓଡ଼ିଶା ନିଜର ସ୍ୱାଧୀନତାକୁ ବହୁକାଳଯାଏ ଅକ୍ଷୁର୍ଣ୍ଣ ରଖି ପାରି-ଥିଲା । ଶେଷରେ ୧୮୦୩ ମସିହାରେ ଓଡ଼ିଶା ଇଂରେଜଙ୍କର କରଗତ ହେଲେ ମଧ୍ୟ ଓଡ଼ିଶାର ବିଦ୍ରୋହବହ୍ନି ବହୁକାଳ ପର୍ଯ୍ୟନ୍ତ ପ୍ରଜ୍ୱଳିତ ଥିଲା ଓ ଖଣ୍ଡ-ବିପ୍ଳବମାନ ଦେଖା ଦେଉଥିଲା । ଏଥିପାଇଁ ଇଂରେଜମାନଙ୍କୁ ବହୁତ ଯତ ସହ୍ୟ କରିବାକୁ ପଡ଼ୁଥିଲା । ତାହା-ମଧ୍ୟରେ ୧୮୧୭ ମସିହାର ବାଣପୁର ବିଦ୍ରୋହ, ପାଇକ ବିଦ୍ରୋହ,

ଓ ମୁସଲମାନ ବିଦ୍ରୋହ, ସମ୍ବଲପୁର ବିଦ୍ରୋହମାନ ଉଲ୍ଲେଖଯୋଗ୍ୟ । ଓଡ଼ିଶାର ଲୋକମାନେ ଯେ ପରାଧୀନତାକୁ ଘୃଣା କରୁଥିଲେ, ଭାରତର ସବୁଠାରୁ ବିଦ୍ରୋହୀ ଜାତି ବୋଲି ତାଙ୍କର ଅଭିମାନ ଥିଲା, ତାହା ବହୁ ଐତିହାସିକ ସ୍ୱୀକାର କରିଅଛନ୍ତି । ମୂଳତଃ ବ୍ରିଟିଶ-ବିରୋଧୀ ମନୋବୃତ୍ତି ୧୮୩୦ ମସିହା ପର୍ଯ୍ୟନ୍ତ ମଧ୍ୟ ସମ୍ବଲପୁର ଅଞ୍ଚଳରେ ଥିଲା ବୋଲି ସ୍ୱୀକୃତ ହୋଇଅଛି । ମାତ୍ର ଅନୁସନ୍ଧାନ କଲେ ଜଣାଯାଏ ଯେ, ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଏହି ବିପ୍ଳବାଗ୍ନି ଜୀବିତ ଥିଲା । ତା ନ ହୋଇଥିଲେ ୧୮୫୭ ମସିହାର ବିଖ୍ୟାତ ସିପାହୀ-ବିଦ୍ରୋହରେ ଓଡ଼ିଆ ଜାତି ଭାଗ ନେଇ ପାରି ନ ଥାନ୍ତା । କିନ୍ତୁ ପରିତାପର ବିଷୟ ଯେ, ସିପାହୀ-ବିଦ୍ରୋହ ସମ୍ବନ୍ଧେ ବହୁ ଗ୍ରନ୍ଥ ଲେଖାଯାଇଥିଲେ ମଧ୍ୟ ନାନା କାରଣରୁ ସଂକୀର୍ଣ୍ଣ ମନୋଭାବାପନ୍ନ ଲେଖକଗଣ ଓଡ଼ିଆଙ୍କର ନାମ ପର୍ଯ୍ୟନ୍ତ ଉଲ୍ଲେଖ କରି ନାହାନ୍ତି । ସିପାହୀ-ବିଦ୍ରୋହରେ ଯୋଗ ଦେଇଥିବା ବୀରପୁରୁଷ-ମାନଙ୍କମଧ୍ୟରେ ଗୁଣ୍ଠି ଖୁଣ୍ଟିଆ ବା ଚନ୍ଦନ ହଜୁରୀ ଓ ରାଜା ସୁରେନ୍ଦ୍ର ସାଏଙ୍କର ନାମ ଉଲ୍ଲେଖଯୋଗ୍ୟ । ଏମାନଙ୍କର ବୀରତ୍ୱ, ସୁଦୂର ଉତ୍ତର-ଭାରତରେ ମଧ୍ୟ ପ୍ରତିଷ୍ଠା ଲାଭ କରିଥିଲା ।

## —ଦୁଇ—

ଭାରତର ତୀର୍ଥକ୍ଷେତ୍ରମାନଙ୍କ ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ର ଯେପରି ପ୍ରସିଦ୍ଧ, ଧର୍ମ ଓ ସଂସ୍କୃତି ସମସ୍ତ ଦିଗରେ ସେହିପରି ପୁରୀର ଦାନ ଅନେକ ମହତ୍ତ୍ୱ । କଳା, ଜ୍ଞାନ, ବିଜ୍ଞାନଠାରୁ ଆରମ୍ଭ କରି ଯୁଦ୍ଧ ବିଭାଗରେ ମଧ୍ୟ ପୁରୀ ଅଞ୍ଚଳର ବ୍ୟକ୍ତିମାନେ କମ୍ ସାଧନା କରି ନାହାନ୍ତି ।

ଜଗନ୍ନାଥ ମନ୍ଦିରର ସେବାୟତମାନେ ପୁରୀର ଆଦମ ବାସିନ୍ଦା ଓ ସେମାନଙ୍କ ମଧ୍ୟରେ ବହୁ ଚିରସ୍ମରଣୀୟ ବ୍ୟକ୍ତି ଜନ୍ମଗ୍ରହଣ କରିଥିଲେ । ହଜୁରୀ ପରିବାର ଉକ୍ତ ସେବାୟତ ଗୋଷ୍ଠୀମଧ୍ୟରେ ଗ୍ରାମ ଖୁଣ୍ଟିଆ ସେବା କରିବାରେ ଅଧିକାରୀ ଓ ପ୍ରତିଷ୍ଠିତ ଅଟନ୍ତି । ସେମାନଙ୍କର ପଦବୀ ଖୁଣ୍ଟିଆ ଓ ଡାକନାମ ହଜୁର ବା ହଜୁରୀ ଅଟେ । ସେହି ପ୍ରଖ୍ୟାତ ହଜୁରୀ ବଂଶରେ ହଜୁରୀ ରଘୁନାଥ ଖୁଣ୍ଟିଆଙ୍କ ଔରସରେ ସହଧର୍ମିଣୀ କମଳାବତୀଙ୍କ ଗର୍ଭରୁ ଘୃଷି ଖୁଣ୍ଟିଆଙ୍କର ଜନ୍ମ ।

ହଜୁରୀ ରଘୁନାଥ ରାଜସଭା ଭିତରେ ସମଗ୍ର ଭାରତରେ ପ୍ରସିଦ୍ଧ ଥିଲେ । ତାହାଙ୍କର ଧନଧାନ୍ୟ, ଭବବନ୍ଧୁର ଅଭାବ ନ ଥିଲା । ମାତ୍ର ସନ୍ତାନ ଅଭାବରୁ ସେ ସର୍ବଦା ଦୁଃଖିତ ଥିଲେ । ସେଥିପାଇଁ ସେ ନାନା ଧର୍ମୀୟ ଅନୁଷ୍ଠାନ ଓ ଜଗନ୍ନାଥଙ୍କ ନିକଟରେ ବହୁକାଳରୁ ପ୍ରାର୍ଥନା କରିଥିଲେ । ଶେଷରେ ତାଙ୍କର ବିକଳ ପ୍ରାର୍ଥନା ଦୟାଳ ନୀଳାଚଳନାଥଙ୍କ କର୍ଣ୍ଣଗୋଚର ହେଲା । ଫଳରେ ରଘୁନାଥ ୧୭[illegible]୫ ଖ୍ରୀଷ୍ଟାବ୍ଦ କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନ ପ୍ରଭୁଙ୍କ ଚନ୍ଦନ ଲାଗି କରିବା ସମୟରେ ତାଙ୍କର ଏକ ପୁତ୍ରସନ୍ତାନ ଜନ୍ମ ହେବା ସମ୍ବାଦ ପାଇ ତାହାର ନାମ ଚନ୍ଦନ ହଜୁରୀ ରଖିଥିଲେ । ଏଥିନିମନ୍ତେ ବହୁ ଗୌରବ ଅନୁଭୂତ ହୋଇଥିଲା ।

ଚନ୍ଦନଙ୍କର ଡାକନାମ ଥିଲା ଘୃଷି ଖୁଣ୍ଟିଆ । କାରଣ ସେ ଶୈଶବାବସ୍ଥାରେ ନିତାନ୍ତ ଚପଳସ୍ୱଭାବ ଥିଲେ । କୌଣସି କାର୍ଯ୍ୟ ସେ କରିବାକୁ ସାହସୀ ହେଉ ନ ଥିଲେ, ଏପରି କାର୍ଯ୍ୟ ନ ଥିଲା । ତେଣୁ ପିତାମାତା ତାଙ୍କୁ 'ଘୃଷି, ଘୃଷି' ବୋଲି ଡାକୁଥିଲେ ଓ ସେ ଉତ୍ତର ଜୀବନରେ ଘୃଷି ଖୁଣ୍ଟିଆ ନାମରେ ପରିଚିତ ହୋଇଥିଲେ ।

ଗୃଣି ଯୌବନର ପ୍ରଥମ ପାଦରୁ ଓଡ଼ିଆ ଅଧ୍ୟୟନ ସହିତ ଆପଣାର ଯାନୀ·ବ୍ୟବସାୟ ରକ୍ଷା କରିବାକୁ ହିନ୍ଦୀ ଅଧ୍ୟୟନ ·ଆରମ୍ଭ କରିଥିଲେ । ଠାକୁର ରାମଦୟାଲ ପଟେଲ ତାହାଙ୍କର ହିନ୍ଦୀଶିକ୍ଷକ ଥିଲେ, ସେ କ ଉତ୍ତର ଭାରତର ବ୍ରଜ·ଭାଷାରେ ପ୍ରବୀଣ ଓ ମୋଡ଼-ଲିପି ଲେଖିବାରେ ସିଦ୍ଧହସ୍ତ ଥିଲେ । ତାହାଙ୍କଠାରୁ ଉତ୍ତର-ଭାରତୀୟ ବିଖ୍ୟାତ ବଂଶର ଇତିହାସ ଶ୍ରବଣ କରିବା ଫଳରେ ଗୃଣି ଉତ୍ତର-ଭାରତର ପ୍ରଧାନ ସଂବାଦପ୍ରତି ଆକୃଷ୍ଟ ହୋଇ ପାରିଥିଲେ । ଶିକ୍ଷା-ଦୀକ୍ଷାର ପ୍ରଭାବରେ· ସେ, ହିନ୍ଦି 'କବିତା ଲେଖିବାରେ ନିପୁଣତା ଅର୍ଜନ କରିଥିଲେ । ବୀରତ୍ୱକାହାଣୀ ଶ୍ରବଣରେ ଗୃଣି ମଧ୍ୟେ ମଧ୍ୟେ ଆମୋଦିତ ହେଉଥିଲେ ମଧ୍ୟ ତାଙ୍କର ସ୍ୱାସ୍ଥ୍ୟ ଅତି ଦୁର୍ବଳ ଥିଲା । ଯଦି ସେହି ଅବସ୍ଥା ତାଙ୍କର ସମସ୍ତ ଜୀବନରେ ରହିଥାନ୍ତା, ତେବେ ଇତିହାସରେ ତାଙ୍କର ସ୍ଥାନ ଉଲ୍ଲେଖଯୋଗ୍ୟ ହୋଇ ନ ଥାନ୍ତା ।

ଦୈବାତ୍ ଦିନେକର ଘଟଣାରେ ଭଗବାନ୍ ଏହି ବାଧା ଘୁଞ୍ଚାଇ ଦେଇଥିଲେ । ଜଗନ୍ନାଥଙ୍କର ପହଣ୍ଡି ହେଲାବେଳେ ବଳିଷ୍ଠ ସେବାୟତମାନେ ପହଣ୍ଡି ବିଜେ କରାଆନ୍ତି । ସେତେବେଳେ ଗୃଣି ବାହାଦୁର ନେବାପାଇଁ କାଠିଆ (ଯେଉଁମାନେ ଶ୍ରୀଭୁଜ ତଳେ ରହନ୍ତି) ଭାବରେ ରହିବାକୁ ପ୍ରଯତ୍ନ କଲେ । ଅତ୍ୟଧିକ ବଳିଷ୍ଠମାନେ କାଠିଆ ହୁଅନ୍ତି; ମାତ୍ର ଦୁର୍ବଳକାୟ ଗୃଣିଙ୍କର ଏତାଦୃଶ ସାହସ ଦେଖି ଅନ୍ୟ ସେବାୟତମାନେ ତାହାଙ୍କୁ ସେଠାରୁ ବାହାର କରିଦେଲେ । ସେତିକିରେ ତେଜସ୍ୱୀ ଗୃଣି ବିଚଳିତ ହୋଇ କାନ୍ଦି କାନ୍ଦି ଜଗନ୍ନାଥଙ୍କ ଚରଣରେ ଶପଥ ଗ୍ରହଣ କଲେ, "ଆର ବର୍ଷକୁ ମୁଁ କାଠିଆ ନ ରହିଲେ ଆଉ ପହଣ୍ଡି କରିବି ନାହିଁ ।" ସେହି ଦିନ-ଠାରୁ ଗୃଣିଙ୍କର ସମସ୍ତ ଅଧ୍ୟୟନ ସ୍ଥଗିତ ରହିଲା । ବଜ୍ର ସାଧନାରେ ଗୃଣି ଶାରୀରିକ ବଳ ଅର୍ଜନ କରି ଆଶାତୀତଭାବରେ ଉନ୍ନତ

କ୍ଷ[illegible]ବାକୁ ଲାଗିଲେ ଓ ଠିକ୍ ଏକ ବର୍ଷ ପରେ ସେ ବଳିଷ୍ଠ ଖୁଣ୍ଟିଆ ସେବାୟତମାନଙ୍କର ସମକକ୍ଷ ହୋଇ ପାରିଥିଲେ। ଗୁରୁଙ୍କୁ ଯେତେବେଳେ ୧୨ ବର୍ଷ, ସେତେବେଳେ ତାଙ୍କର ବୈବାହିକ ସମ୍ବନ୍ଧ ସ୍ଥାପିତ ହେଲା। ତାହାଙ୍କ ପତ୍ନୀଙ୍କର ନାମ ଥିଲା ସୁନ୍ଦରମଣି ଓ ବାସ୍ତବରେ ସେ ଅନନ୍ୟସୁନ୍ଦରୀ ଥିଲେ। ବିବାହ ପରେ ପରେ ଗୁରୁ ଅର୍ଜିତ ବିଦ୍ୟା, ବଳ ଧନ ଆପଣାର କୌଳିକ ଯାତ୍ରୀ ବ୍ୟବସାୟ ରକ୍ଷା ଲାଗି ଉତ୍ତର-ଭାରତ ଯାତ୍ରା କରିଥିଲେ। ଏହି ଯାତ୍ରା ତାଙ୍କର ବହୁମୁଖୀ ଜ୍ଞାନର କାରଣ ହେଲା। ନର୍ମଦା ପ୍ରଦେଶ, ବାନ୍ଦା, ମିର୍ଜାପୁର, ଦାକ୍ଷିଣାତ୍ୟର ହାଇଦରାବାଦ, ନାଗପୁର, ଗ୍ୱାଲିଅର, ଦିଲ୍ଲୀ, ମଥୁରା, କାଲକାଙ୍କର ପ୍ରତାପଗଡ଼, ଝାନ୍ସି ପ୍ରଭୃତି ରାଜ୍ୟ ଗୁରୁଙ୍କ ପରିବାରର ବୃତ୍ତି-ଅଞ୍ଚଳ ବୋଲି ପରିଚିତ ଥିଲା। ତେଣୁ ଏହି ପ୍ରଖ୍ୟାତ ଅଞ୍ଚଳରେ ଗୁରୁ ତାଙ୍କର କାର୍ଯ୍ୟକ୍ରମରେ ପରିଚିତ ହେଲେ। ସେଥିମଧ୍ୟରୁ କେବଳ ଝାନ୍ସି ଗସ୍ତରୁ ତାଙ୍କ ଜୀବନରେ କ[illegible]ଲାଭ ହୋଇଅଛି, ତାହା ଦେଖିବାର କଥା।

## — ତିନି —

ନର୍ମଦା-ତଟବର୍ତ୍ତୀ ଭୂମିଖଣ୍ଡ ଯେତେବେଳେ ପ୍ରବଳ-ପ୍ରତାପୀ ପେଶବା ରାଜ୍ୟ ବୋଲି ପରିଚିତ ଥିଲା, ସେତେବେଳେ କୃଷ୍ଣରାଓ ତାବେ ନାମକ ଜଣେ ମାମଲତଦାର ଭାବରେ ଓର୍ଚ୍ଛା ନାମକ ସ୍ଥାନରେ ଅବସ୍ଥାନ କରୁଥିଲେ। ତାଙ୍କର ପୁତ୍ର ବଳବନ୍ତରାଓ ତାବେ ମଧ୍ୟ ପେଶବା ସରକାରର ଅତି ପ୍ରିୟ ଥିଲେ। ସେ ଯେତେବେଳେ ମହାରାଷ୍ଟ୍ର ସେନାର ଅଧିନାୟକ, ତାଙ୍କର ପୁଣି [illegible] ଜ୍ୟେଷ୍ଠ ପୁତ୍ର ମୋରୋପନ୍ତଙ୍କର ବୁଦ୍ଧିରେ, ପ୍ର[illegible]ମଣ୍ଡଳୀରେ ମୁଖ୍ୟ ହୋଇ ବାଜୀରାଓ ପେଶବାଙ୍କ ଭାଇ ଚିମାଜୀ ଆପା ତାଙ୍କୁ ପଦ୍ମନର୍ମଦାର

ଭାବରେ ଗ୍ରହଣ କରୁଥିଲେ । ମେରେ଼ପନ୍ତ ଚୈତନ୍ୟ ଥିଲେ ଓ କଠୋର ଧର୍ମବିଶ୍ବାସୀ ଥିଲେ । ସେହି ସୁଯୋଗରେ ଶୈବ ହକୁଷ୍ଟ ପରିବାରର ସେ ଯଜମାନ ଥିଲେ । ମାତ୍ର ତାଙ୍କ ସଙ୍ଗେ ବିଶେଷ ସମ୍ପର୍କ ନ ଥିଲା । ଦିନେ ପିତା ପୁତ୍ର ଦୁହେଁ କାଶୀବିଶ୍ବନାଥ ମନ୍ଦିରରେ ରୁଦ୍ରାଭିଷେକ କରି ଫେରିବାବେଳେ ଗୃଖି ମେରେ଼ପନ୍ତଙ୍କୁ ବିଶ୍ବନାଥ ମନ୍ଦିର ପ୍ରାଙ୍ଗଣରେ ବସ୍ତ୍ର, ମିଷ୍ଟାନ୍ନ ବିତରଣ କରୁଥିବାର ଦେଖିଲେ । ମେରେ଼ପନ୍ତଙ୍କ ପତ୍ନୀର ଦୋହଳପତ୍ତା ବା ଗର୍ଭାଧାନ ହୋଇଥିବାରୁ ଏପ୍ରକାର ଦାନ ଅନୁଷ୍ଠିତ ହେଉଥିଲା । ସମସ୍ତେ ପୁତ୍ରସନ୍ତାନ ହେଉ ବୋଲି ଆଶୀର୍ବାଦ ଦେଇ ଦାନ ଗ୍ରହଣ କରୁଥିଲେ । ଗୃଖି ପିତାଙ୍କ ସହ ବସ୍ତ୍ର, ମିଷ୍ଟାନ୍ନ ଗ୍ରହଣ କରିବା ପରିବର୍ତ୍ତେ ତାହାଙ୍କୁ ଆପଣାର ଯଜମାନ ବୋଲି ଜଣାଇଲେ । ମେରେ଼ପନ୍ତ ବହୁ ଆଗ୍ରହ ସହକାରେ ଦାନ ସମର୍ପଣ କରିବାବେଳେ ଗୃଖିଙ୍କର ସ୍ପଷ୍ଟଭାବରେ କନ୍ୟାରତ୍ନ-ଲାଭର ଆଶୀର୍ବାଦ ମେରେ଼ପନ୍ତଙ୍କୁ ଅଦ୍ଭୁତ ଆନନ୍ଦ ହେଲା । ଯୁବକ ତୀର୍ଥଗୁରୁଙ୍କର ଏଭଳି ଆଶୀର୍ବାଦକୁ ସେ ନତମସ୍ତକରେ ସ୍ବୀକାର କରି ତାହାଙ୍କୁ ଆପଣା ଗୃହକୁ ଡାକି ନେଇ ଅତି ଆଗ୍ରହରେ ଅଭ୍ୟର୍ଥନା କରିଥିଲେ । ଗୃଖି ପାଇଥିବା ମୂଲ୍ୟବାନ୍ ଦ୍ରବ୍ୟମାନ ପୁରୀରେ ଥିବା ପିତୃବ୍ୟଙ୍କ ନିକଟକୁ ପୁତ୍ର ସହ ପଠାଇଦେଇ ସେହି ଦିନଠାରୁ କିଛି କାଳ କାଶୀରେ ଅବସ୍ଥାନ କଲେ । ୧୮୩୫ ଖ୍ରୀଷ୍ଟାବ୍ଦ ନଭେମ୍ବର ୧୯ ତାରିଖରେ ମେରେ଼ପନ୍ତଙ୍କର କନ୍ୟାରତ୍ନଟିଏ ଜନ୍ମଲାଭ କଲା । ହକୁଷ୍ଟ ଓ ଗୃଖି ସେତେବେଳେ ସେଠାରେ ଉପସ୍ଥିତ ଥିଲେ ଓ ବହୁ ମର୍ଯ୍ୟାଦା ଲାଭ କରି, ଧନଦଉଲତ ପ୍ରାପ୍ତ ହୋଇ ପରୀ ଫେରିଆସିଲେ; ମାତ୍ର ବାଳିକାର ମୁଣ୍ଡନ ପୁରୀରେ କରିବା ପାଇଁ ମେରେ଼ପନ୍ତଙ୍କୁ ନିମନ୍ତ୍ରଣ ଦେଇ ଆସିଲେ । ଦୁଇ ବର୍ଷ ପରେ ମେରେ଼ପନ୍ତ ପରିବାର ପୁରୀ ଆସିଥିଲେ ଓ ହକୁଷ୍ଟ ବଂଶ ସଙ୍ଗେ ଉକ୍ତ

ଐତିହାସିକ ପରିବାରର ସମ୍ପର୍କ ଦୂରୀଭୂତ ହୋଇଥିଲା, ଯାହା କି ପରେ ଋଷି ଖୁଣ୍ଟିଆଙ୍କ ଆଦର୍ଶ ଜୀବନର ମୂଳପିଣ୍ଡ ହେଲା । ଏହି ପରମ୍ପରା ସ୍ଥାପିତ ହେବା ପରେ ମନୁବାଈ ବାଳବିଧବା ହେବ, ଏହି ଅବସ୍ଥାରେ ବାଣୀ ଧାରଣ କରି ମେହେରପନ୍ତ କାଶୀ ଫେରିଗଲେ । ସେତିକିବେଳେ ଆଉ ଗୋଟିଏ ଘଟଣା ଘଟିଥିଲା । ଋଷି କ୍ଷୁଦ୍ର ଶିଶୁର ଚପଳତାରେ ବିଶେଷ ଆକୃଷ୍ଟ ଥିଲେ ଓ ମେହେରପନ୍ତଙ୍କ ସଙ୍ଗେ ଯିବାପାଇଁ ପିତାଙ୍କୁ ଜଣାଇଲେ । ମେହେରପନ୍ତ ଏଥିରେ ଆଗ୍ରହୀ ଥିଲେହେଁ ପିତା ଉକ୍ତ କାର୍ଯ୍ୟକୁ ପସନ୍ଦ ନ କରିବାରୁ ତାହା ସମ୍ଭବ ହୋଇ ନ ଥିଲା । ମେହେରପନ୍ତ କାଶୀ ଗଲେ । ଋଷି ପୁରୀରେ ଗତାନୁଗତିକ ଜୀବନ ଯାପନ କଲେ । ଏହାପରେ କିଛି ଦିନ ଅତିବାହିତ ହୋଇଗଲା ।

## —ଚାରି—

ଏହାମଧ୍ୟରେ ମେହେରପନ୍ତ ପରିବାରରେ ନାନା ବାଧା ଉପସ୍ଥିତ ହେଲା । ନାନାଜୀ ଅପ୍ପାଙ୍କ ମୃତ୍ୟୁ ପରେ ମେହେରପନ୍ତ ପରିବାରର ଆର୍ଥିକ ପରିସ୍ଥିତିରେ କେତେକ ବ୍ୟାଘାତ ଆସିଥିଲା । କେବଳ ସେତିକି ନୁହେଁ, ଦୁବେଳଙ୍କ ଭାଗ୍ୟରେ ମାତୃହୀନ ଯୋଗ ପଡ଼ି ତାଙ୍କ ଜୀବନରେ ଦୁଃଖ କଷ୍ଟର କାରଣ ହେଲା । ଭାଗୀରଥୀ ବାଈଙ୍କ ମୃତ୍ୟୁରେ ଅଧୀର ହୋଇ ମେହେରପନ୍ତ ପରିବାର ଚିରଦିନ ପାଇଁ କାଶୀ ଛାଡ଼ି ବାଜୀରାଓଙ୍କ ଆଶ୍ରୟ ନିମନ୍ତେ ବିଠୁର ଚାଲିଗଲେ । ମେହେରପନ୍ତ ବିଠୁରରେ ପହଞ୍ଚିଥିବା ସମ୍ବାଦରେ ବିଠୁର ଅଞ୍ଚଳରେ ବ୍ୟବସାୟ ବୃଦ୍ଧି ହେବ ଭାବି 'ଚନ୍ଦନ ହଜୁରୀ (ଋଷି) ବିଠୁର ଯାତ୍ରା କଲେ । ଋଷି ବିଠୁରରେ ଥିବାବେଳେ ପୁରୀରେ ରଘୁନାଥ ହଜୁରୀଙ୍କର ପରମପଦ ହେଲା । କିନ୍ତୁ ସେ ଉକ୍ତ ସମ୍ବାଦ ବହୁ ଦିନ ପରେ ପାଇ ଶୋକାତୁର ହୋଇପଡ଼ିଲେ । ଭାବପ୍ରବଣ

ଗୃଷି ଏତେକାଳରେ ଭାଙ୍ଗିପଡ଼ିବାର ବ୍ୟକ୍ତି ନ ଥିଲେ । ସେ ବଠୁରଣରେ ଘନଶ୍ୟାମ ଦେବବର୍ତ୍ତୀଙ୍କୁ ରଖାଇ ଅନ୍ତ୍ୟେଷ୍ଟି ପାଇଁ ପୁରୀ ଆସିଥିଲେ । ପୁରୀରେ ପିତୃବ୍ୟଙ୍କ ସଙ୍ଗେ ବ୍ୟବସାୟ ନେଇ ମତଭେଦ ହେଲା; ତେଣୁ ସେ ପୁଣି ବଠୁରୁ ଫେରିଗଲେ । ଏହାର ମୂଳରେ ଥିଲା—ଗୃଷି ବଠୁରରେ ଅପେକ୍ଷାକୃତ ସୁଖ, ସ୍ୱଚ୍ଛନ୍ଦରେ ରାଜପରିବାର ସଙ୍ଗେ ଚଳିବାକୁ ଭଲ ପାଉଥିଲେ । ସ୍ୱାମୀ ପିତୃବ୍ୟ ଏତାଦୃଶ ବ୍ୟବହାରକୁ ଅକୁଶଳ ବୋଲି ମନେ କରୁଥିଲେ । ପରିଶେଷରେ ଗୃଷି ଆପଣାର ମତକୁ ହିଁ ରକ୍ଷା କରିଥିବାରୁ ପିତୃବ୍ୟଙ୍କ ସଙ୍ଗେ ତାଙ୍କର ଦୀର୍ଘ ମତଭେଦ ରହିଯାଇଥିଲା । ଗୃଷି ଯିବାରୁ ଘନଶ୍ୟାମ ଦେବବର୍ତ୍ତୀ ପୁରୀ ଫେରି ଆସିଲେ । ବଠୁରରେ ଗୃଷି, ମନୁବାଈ ଓ ନାନାସାହେବଙ୍କ ମଧ୍ୟରେ ସହୃଦୟତା କ୍ରମେ ଦୃଢ଼ତର ହେବାକୁ ଲାଗିଲା ।

ଉକ୍ତ ଅବସ୍ଥା କିନ୍ତୁ ବେଶୀ ଦିନ ସ୍ଥାୟୀ ହେଲା ନାହିଁ । ରାଜଗୁରୁ ଗୃଷିଙ୍କ ଉପସ୍ଥିତିରେ ମନୁବାଈଙ୍କର ଶୁଭ ପରିଣୟ ଝାନ୍ସିର ଗଙ୍ଗାଧର ରାଓଙ୍କ ସଙ୍ଗେ ସମ୍ପନ୍ନ ହେଲା । ନବଦମ୍ପତି ପରିବାରର ଆଶୀର୍ବାଦ ସମ୍ପନ୍ନ ହେଲା । ମନୁବାଈ ରାଜରାଣୀ ଲକ୍ଷ୍ମୀବାଈ ନାମରେ ପ୍ରସିଦ୍ଧ ହେଲେ । ବିବାହପରେ ଗଙ୍ଗାଧର ରାଓ ବହୁ ଧନରତ୍ନ ଗୃଷିଙ୍କୁ ଦେଇଥିଲେ ଓ ଦୀକ୍ଷିତ ପତ୍ନୀ ଭାବରେ ଝାନ୍ସିରେ ଗୃଷିଙ୍କର ଖ୍ୟାତି ଥିଲା । ଗୃଷି ଅଳ୍ପ ଦିନପରେ ଧନରତ୍ନ ନେଇ ପୁରୀରେ ସ୍ୱଗୃହ ସଂଗଠନରେ ଲାଗିପଡ଼ିଲେ । ଏହାମଧ୍ୟରେ ଗୃଷି କନ୍ଥି ସଂସ୍କୃତ ଅଧ୍ୟୟନ କଲେ ଶୁଭଫଳ ପ୍ରଦାନ କରିବ ବୋଲି ଭାବି ସ୍ୱ° ପଣ୍ଡିତ କୃଷ୍ଣଚନ୍ଦ୍ର ରଥଙ୍କଠାରୁ ସଂସ୍କୃତ ବିଦ୍ୟା ଅର୍ଜନ କରିବାକୁ ପ୍ରଯତ୍ନ କରିଥିଲେ । ସଂସ୍କୃତରେ ତାଙ୍କର ଚଳଣୀୟ ଜ୍ଞାନାର୍ଜନ ହୋଇ ପାରିଥିଲେ ମଧ୍ୟ ତାହା ଅଧିକ ଦିନ ସ୍ଥାୟୀ ହୋଇପାରି ନ ଥିଲା । କାରଣ ଶିକ୍ଷକ ମହାଶୟ ବୁଝିପାରିଥିଲେ ଯେ, ତାଙ୍କର ବିଦ୍ୟାର୍ଜନଠାରୁ ବଳ

ଓ କୌଶଳ ଅର୍ଜନ୍ ନିମନ୍ତେ ଅଧିକ ଶ୍ରଦ୍ଧା ଥିଲା । ଏହି କାରଣରୁ ବିଦ୍ୟାର୍ଜନରେ ବିଶେଷ ଅଗ୍ରଗତି ହୋଇପାରି ନ ଥିଲା । ଗୁଣ୍ଡି ଏହି ଅବସରରେ ଧାରବାଟୀ ନାମକ ଗଡ଼ (ଜାଗା) ନିର୍ମାଣ କରି ସେଥିରେ ବଳ ଓ କୌଶଳ ଅର୍ଜନ କରିବାକୁ ଲାଗିଲେ । ଏହାଙ୍କର ଦୁଇଟି ଆଖଡ଼ା ଥିଲା । ପ୍ରଥମଟି ବଡ଼ ଆଖଡ଼ାଗଡ଼ (ଜାଗା) ଓ ଅନ୍ୟଟି ଧାରବାଟୀ ଜାଗା ।

ଉକ୍ତ ସ୍ଥାନରେ ଶତାଧିକ ବଳିଷ୍ଠ ଯୁବକ ବଳକୌଶଳରେ ସୁଶିକ୍ଷିତ ଭାବରେ ରହୁଥିଲେ ଓ ପ୍ରଶଂସିତ ହେଉଥିଲେ । ସେହି ଶାରୀରିକ ବଳ କେବଳ କୁସ୍ତି ସ୍ପାନଜାଦରେ ମଲ୍ଲବିଦ୍ୟା ପାଇଁ ବ୍ୟବହୃତ ହେଉ ନ ଥିଲା, ସେହି ବଳମାନେ ସୁଶିକ୍ଷିତ ଓ ଲୋକ-ବ୍ୟବହାରରେ ପ୍ରବୀଣତା ମଧ୍ୟ ଅର୍ଜନ କରିଥିଲେ । ତତ୍କାଳୀନ ପୁରୀର ଗୋଟିଏ ଅଭାବ ଏହି ବଳଙ୍କର ଅନୁଭବ ମଧ୍ୟରେ ଥିଲା, ଯାହା କି ତାଙ୍କର ମନକୁ ଉଦ୍ଗତ ଅବସ୍ଥାକୁ ଆଣି ଦେଇଥିଲା ।

ସେତେବେଳେ ପୁରୀ ସହରର ପରିସର ଅତି ଅଳ୍ପ ଥିଲା, ଲୋକସଂଖ୍ୟା ନଗଣ୍ୟ ଥିଲା, ଅଥଚ ପର୍ଯ୍ୟଟକଙ୍କର ସଂଖ୍ୟା ବହୁତ ବେଶି ଥିଲା । ଶହ ଶହ ପଦଯାତ୍ରୀ ଜଗନ୍ନାଥଦର୍ଶନକୁ ବହୁ କ୍ଲେଶରେ, କେହି ବା ଜାହାଜରେ ଆସୁଥିଲେ । ସେହି ବିଦେଶାଗତ ଯାତ୍ରୀମାନଙ୍କ ମଧ୍ୟରୁ ଅନେକେ ଅତି ଶୋଚନୀୟ ଅବସ୍ଥାରେ ପୁରୀରେ ଆସି ପହଞ୍ଚୁଥିଲେ । ଅନେକେ ନାନା ରୋଗଯନ୍ତ୍ରଣାରେ ମୃତ୍ୟୁମୁଖରେ ପଡ଼ୁଥିଲେ । ମାତ୍ର ସେମାନଙ୍କର ମୃତ ଦେହକୁ ନିର୍ଜନ ପ୍ରଦେଶରେ ଫିଙ୍ଗିଦେବା ଛଡ଼ା ଅନ୍ୟ ଉପାୟ ନ ଥିଲା ଓ କେହି ଅସୁସ୍ଥ ହେଲେ ତାହାର ଚିକିତ୍ସା ପାଇଁ କୌଣସି ବ୍ୟବସ୍ଥା କରିବା ସମ୍ଭବ ହେଉ ନ ଥିଲା । ସେତିକିବେଳେ ଗୁଣ୍ଡି ଏକ ଜନାନୁଷ୍ଠିତ କାର୍ଯ୍ୟର ପ୍ରତିକାର ନିମନ୍ତେ ଏକ ସଂଗଠନ କରିବା

କରିଥିଲେ । ସମ୍ବାଦପତ୍ର ସମ୍ପାଦକ, ସମ୍ବାଦସମିତି ସେତେବେଳେ ନ ଥିଲା । କାମହିଁ ସମସ୍ତଙ୍କ ମୂଳ ଥିଲା । ଏହି କାମ, ସେ ହାତକୁ ନେଇ ଘନ ବେହେରା, କୃଷ୍ଣଚନ୍ଦ୍ର ରଥ, ଦିବ୍ୟସିଂହ ମିଶ୍ର, ଚନ୍ଦ୍ରା ପ୍ରଧାନ, ବଳି ବଗୋଇ, ରାମ ହାତ୍ରୀ ପ୍ରଭୃତିଙ୍କ ସାହାଯ୍ୟରେ ପୁରୀରେ ଅନାଥ ଶବ ସଂସ୍କାରର ଆୟୋଜନ କଲେ । ସେଥିରେ ଅନେକ ମାଟିଆମାନେ ଆନନ୍ଦରେ ଲାଗି ପଡ଼ିଲେ ଓ ସେମାନେ ସ୍ୱେଚ୍ଛାସେବକ ରୂପେ ଆପଣାର କାର୍ଯ୍ୟକୁ ବଢ଼ାଇଦେଲେ । ବାଲ୍ୟକି ବଇଦ ନାମକ ଏକ ପ୍ରସିଦ୍ଧ ବୈଦ୍ୟଙ୍କ ଅନୁଷ୍ଠାନ ମଧ୍ୟରେ ରହି ବିଦେଶାଗତ ଯାତ୍ରୀଙ୍କର ସେବାଶୁଶ୍ରୂଷା କରିବାକୁ ଲାଗିଲେ । କେହି କେହି ତାଙ୍କର ଏ ପ୍ରକାର କାର୍ଯ୍ୟକୁ ଘୃଣା ଚକ୍ଷୁରେ ଦେଖୁଥିଲେ ମଧ୍ୟ ସର୍ବସାଧାରଣ ଲୋକେ ଚନ୍ଦନ ହଜୁରୀଙ୍କ ଉପରେ ଅତ୍ୟନ୍ତ ପ୍ରୀତ ଥିଲେ । ଏହି କାର୍ଯ୍ୟ ଫଳରେ ତାଙ୍କର ଯାତ୍ରୀସଂଖ୍ୟା ବଢ଼ିଥିଲା ବୋଲି କେହି କେହି ମତ ବ୍ୟକ୍ତ କରନ୍ତି । ସେ ଯାହାହେଉ, ଏ ପ୍ରକାର କାର୍ଯ୍ୟ ଫଳରୁ ଗୃଷ୍ଟିଙ୍କର ଜ୍ଞାନ ଓ ମତ ବ୍ୟକ୍ତ କରିବାର କ୍ଷମତା ଯଥେଷ୍ଟ ବଢ଼ି ଯାଇଥିଲା । ସେ ନିର୍ଭୀକ ଓ ସ୍ପଷ୍ଟବାଦୀ ଥିଲେ । ଦେଶାତ୍ମବୋଧ ଏଥିରେ ମିଶ୍ରିତ ହେବାରୁ ଗୃଷ୍ଟି ବାସ୍ତବରେ ଏକ ଆଦର୍ଶ ପୁରୁଷ ଭାବରେ ପୁରୀର ସର୍ବସାଧାରଣଙ୍କ ମଧ୍ୟରେ ପରିଗଣିତ ହେଲେ ଓ ବହୁବ୍ୟକ୍ତି ତାଙ୍କର ସମର୍ଥକ ହେଲେ । ଏହି ଅବସ୍ଥାରେ ତାଙ୍କର ଜୀବନରେ ଅନ୍ୟ ଏକ ଘଟଣା ଘଟିଥିଲା ।

## —ପାଞ୍ଚ—

୧୮୧୭ ଖ୍ରୀଷ୍ଟାବ୍ଦ ବେଳର ପାଇକ ବିଦ୍ରୋହର ସତ୍ତା ପୁରୀରୁ ଲୋପ ହୋଇଥିଲେ ମଧ୍ୟ ତାହାର ସଦ୍ୟ ପ୍ରଭାବ ଲୋକଙ୍କ ଉପରେ ଯଥେଷ୍ଟ ଥିଲା । ଭାରତର ସମସ୍ତ ପ୍ରାନ୍ତରୁ ବହୁ ଶ୍ରେଣୀର ବ୍ୟକ୍ତି

ପୁରୀକୁ ଆସୁଥିଲେ; ତେଣୁ ପୁରୀର ଯାବତୀୟ ଶିକ୍ଷିତ ବ୍ୟକ୍ତିମାନେ ସମଗ୍ର ଭାରତ ବିଷୟରେ ବହୁ ବିଷୟ ଜାଣିବାର ସୁଯୋଗ ପାଉଥିଲେ । ଏ ସମସ୍ତ ପ୍ରେରଣାରେ ଅନୁପ୍ରାଣିତ ଓ ବିଦେଶରେ ରହି ଅଧିକ ଜ୍ଞାନପ୍ରାପ୍ତ ଗୁରୁ ତତ୍କାଳୀନ ସଂସ୍କାରକମାନଙ୍କ ମଧ୍ୟରେ ଅଗ୍ରଣୀ ହେଲେ । ତେଣୁ ତାଙ୍କର ଦୃଷ୍ଟିକୁ ଗୋଟିଏ ଅତି ଗୁରୁତ୍ୱପୂର୍ଣ୍ଣ ବିଷୟ ଆସି ଯାଇଥିଲା ।

ସେତେବେଳେ ପୁରୀ ଇଂରେଜମାନଙ୍କ ବସତି ସଙ୍ଗେ ସଙ୍ଗେ କେତେକ ପାଦ୍ରୀଙ୍କର ଅଡ୍ଡାସ୍ଥଳ ହୋଇଥିଲା । ପାଦ୍ରୀମାନେ ସମଗ୍ର ଦେଶରେ ବୁଲି ହିନ୍ଦୁଧର୍ମର ତଥା ମୂର୍ତ୍ତିପୂଜାର କଠୋର ଅପ-ପ୍ରଚାର ଚଳାଇଥିଲେ । କେବଳ ଅନ୍ତ୍ୟଜମାନେହିଁ ଏହି ମତାଣିଆ ଧର୍ମପ୍ରଚାର ପ୍ରତି ବିଶେଷଭାବରେ ଆକୃଷ୍ଟ ହୋଇଥିଲେ । ସେମାନଙ୍କ ମଧ୍ୟରୁ କେହି ନୂଆ ଶାସକଙ୍କୁ ସନ୍ତୁଷ୍ଟ କରିବା ପାଇଁ, ପୁଣି କେହି ବା ଚାକିରି ପାଇଁ ଧର୍ମପ୍ରଚାରକ ପାଦ୍ରୀମାନଙ୍କ ଫାନ୍ଦରେ ପଡ଼ି ଯାଉଥିଲେ । ସ୍ତ୍ରୀ-ପ୍ରଲୋଭନରେ ବହୁ ବ୍ୟକ୍ତି ମଧ୍ୟ ଏହି କୁତ୍ସିତ ଗତି ଲାଭ କରୁଥିଲେ । କେବଳ ଏତିକି ନୁହେଁ, ପାଦ୍ରୀମାନେ ହିନ୍ଦୁଧର୍ମର ଶ୍ରେଷ୍ଠ-ପୀଠ ପୁରୁଷୋତ୍ତମ ବା ପୁରୀର ସ୍ଥାନେ ସ୍ଥାନେ ହିନ୍ଦୁଧର୍ମ ତଥା ଜଗନ୍ନାଥ ବିଗ୍ରହଙ୍କ ବିଷୟରେ ଅତି କୁତ୍ସିତ ପ୍ରଚାର କରିବାକୁ ଭୁଲି ନ ଥିଲେ । ବିଦେଶୀ ଶାସକର ଏହି ପ୍ରଚେଷ୍ଟାହିଁ ଧର୍ମପ୍ରାଣ ଜନସାଧାରଣଙ୍କ ମଧ୍ୟରେ ପ୍ରଥମେ ଅଶ୍ରଦ୍ଧା ଓ ଅସନ୍ତୋଷ ବୃଦ୍ଧିର କାରଣ ହୋଇଥିଲା । ସାଧାରଣ ଲୋକେ ଉତ୍ତ୍ୟକ୍ତ ହୋଇଥିଲେ ମଧ୍ୟ ନବାଗତ ଶକ୍ତିଶାଳୀ ଶ୍ୱେତାଙ୍ଗ ଶାସକଙ୍କର ଏହିବିଧ କାର୍ଯ୍ୟର ପ୍ରତି-ରୋଧ କରିବାକୁ ସାହସ କରିପାରୁ ନ ଥିଲେ । ଏ ଅବସ୍ଥାରେ ଗୋଟିଏ ଘଟଣା ଅଧିକ ଅସନ୍ତୋଷବୃଦ୍ଧିର କାରଣ ହେଲା । ଜଗନ୍ନାଥଙ୍କର ବଡ଼ ରାସ୍ତା ବା ବଡ଼ଦାଣ୍ଡରେ, ଚନ୍ଦନ ଯାତ୍ରା ଯିବା

ସହରର ଛକ ଉପରେ ତଥା ପୁରୀର ପ୍ରଧାନ ପ୍ରବେଶଦ୍ୱାର ନିକଟରେ ପାଦ୍ରୀମାନେ ଏକ ଛୋଟ ଘର କରି ସେଠାରେ ବାପ୍ଟିଷ୍ଟ ମିଶନର କାର୍ଯ୍ୟାଳୟ ଖୋଲି ଦିନରାତି ଜଗନ୍ନାଥ ଓ କାଠମୂର୍ତ୍ତିଙ୍କ କୁତ୍ସିତ ରୂପ ବିଷୟରେ ନିର୍ଭୀକ ଭାବରେ ପ୍ରଚାର କରିବାକୁ ଲାଗିଲେ । ତାହା ଅତି ଶ୍ରୁତିକଟୁ ହେଉଥିଲା ଏବଂ ଏଥିରେ ଚଖିଖୁଣ୍ଟିଆ ଅତ୍ୟଧିକ ଉତ୍ତ୍ୟକ୍ତ ହୋଇଥିଲେ ।

ଜଗନ୍ନାଥ ମହାପ୍ରଭୁଙ୍କ ବିରୁଦ୍ଧରେ ଏଭଳି ବ୍ୟଙ୍ଗପୂର୍ଣ୍ଣ କୁତ୍ସିତ ଚିତ୍ରଣ ଦେଖି ଚଖି ଅଉ ସହୁ ପାରିଲେ ନାହିଁ । ସେ ତାଙ୍କର ବଳଶାଳୀ ଦଳକୁ ନେଇ ପାଦ୍ରୀ ପ୍ରଚାର କେନ୍ଦ୍ରମାନ ଆକ୍ରମଣ କଲେ । ସେସମ୍ବନ୍ଧରେ ଯେଉଁ ଜନଶ୍ରୁତି ଓ ଲିଖିତ ପ୍ରମାଣ ପ୍ରଭୃତି ଦେଖିବାକୁ ମିଳେ, ତାହା ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ଇତିହାସ ଲେଖକମାନେ ଏ ବିଷୟରେ ସମ୍ପୂର୍ଣ୍ଣ ନୀରବ ଓ ନିଷ୍ଠୁର ।

ଶତାଧିକ ପାଦ୍ରୀ ଚଖିଙ୍କ ଆକ୍ରମଣ ଫଳରେ ମୃତାହତ ହୋଇଥିଲେ । ବହୁ ରକ୍ତପାତ ହୋଇଥିଲା । ଏକ ଘଟଣାରେ ବଳି ବଢ଼ୋଇର ମୃତ୍ୟୁ ହୋଇଥିଲେ ମଧ୍ୟ ପାଦ୍ରୀ ଆନ୍ଦୋଳନ ଓ ସଂଘର୍ଷ ଅତି ଉତ୍କଟ ରୂପ ଧାରଣ କରିଥିଲା । ସେମାନଙ୍କର ବହୁ କୁତ୍ସାମୂଳକ ପ୍ରଚାର ପତ୍ର ନଷ୍ଟ କରି ଦିଆଗଲା । 'ଜଗନ୍ନାଥ ପରୀକ୍ଷା' ନାମକ ଅପପ୍ରଚାରମୂଳକ ବହିର ପାଣ୍ଡୁଲିପି ପୋଡ଼ି ଦିଆଯାଇଥିଲା । ମାତ୍ର ପ୍ରବଳପରାକ୍ରମୀ ଇଂରେଜ ଶାସକଙ୍କ ସମ୍ମୁଖରେ ଏ ପ୍ରକାର ଆନ୍ଦୋଳନ ଓ ବିକ୍ଷୋଭର ମୂଲ୍ୟ କିଛି ନ ଥିଲା । ସେମାନେ ନାନାପ୍ରକାର ଦମନଦ୍ୱାରା ଆନ୍ଦୋଳନକାରୀମାନଙ୍କୁ ପରାହତ କରିଥିଲେ । କେତେକ ବ୍ୟକ୍ତି ବନ୍ଦୀ ହୋଇଥିଲେ । କେତେକଙ୍କ ଘର ଦୋରଖ ହୋଇଥିଲା । ଶେଷରେ ଏହି ଆନ୍ଦୋଳନ ନିଷ୍ଫଳ ହୋଇଥିଲା । ଏ ପ୍ରକାର ଅକୃତକାର୍ଯ୍ୟ ପରିସ୍ଥିତି

ଯୋଗୁଁ ଲକ୍ଷ୍ମୀଙ୍କ ମନରେ ନିତାନ୍ତ କଷ୍ଟ ହୋଇଥିବ, ସେ କଷ୍ଟମୟ ମରଣ ଯନ୍ତ୍ରଣା ଅନୁଭବ କରିଥିବେ ଓ ତାହା ସଙ୍ଗେ ସଙ୍ଗେ ବିଦେଶୀ ଶାସନର ପରିଣାମ ଉପଲବ୍ଧି କରିଥିବେ । ଏହି ଅନୁଶୋଚନା ମଧ୍ୟରେ ତାହାଙ୍କ ପତିଙ୍କର ପ୍ରତିଶୋଧ ନେବା ପାଇଁ ଭଗବାନ ସୁଯୋଗ ଦେଇଥିଲେ ଓ ତାଙ୍କର ବିଦ୍ରୋହୀ ମନ କମ୍ପିତ ପରିମାଣରେ ସନ୍ତୋଷ ଲାଭ କରିଥିଲା । ତାହା ହେଉଛି ଭାରତ ସ୍ୱାଧୀନତାର ଶେଷ ନିଶ୍ୱାସ ବା 'ସିପାହି-ବିଦ୍ରୋହ' ।

'ସିପାହି-ବିଦ୍ରୋହ', ଯାହା କି ଉତ୍ତର ଭାରତରେ ଶ୍ରେଷ୍ଠ ବିପ୍ଳବ ନାମରେ ଇତିହାସପ୍ରସିଦ୍ଧ, ସେହି ବିରାଟ ବିପ୍ଳବ ମଧ୍ୟରେ ଲକ୍ଷ୍ମୀ ଖୁଣ୍ଟିଆଙ୍କ ପରି ଅତି ସାଧାରଣ ମନୁଷ୍ୟ, ଯେ କି ଧର୍ମକ୍ଷେତ୍ର ପୁରୀର ଜଣେ ନାଗରିକ ମାତ୍ର, ତାଙ୍କର ସ୍ଥାନ ବା କେଉଁଠି ? ମାତ୍ର ଏହା ସମ୍ଭବ ହୋଇଥିଲା କେବଳ ତାଙ୍କର ମେରେଶ୍ୱରଙ୍କ ପରିବାରଙ୍କ ସଙ୍ଗେ ସହୃଦୟ ବନ୍ଧୁତା ହେତୁ ।

ଏହି ସମୟରେ ଲକ୍ଷ୍ମୀ ଖୁଣ୍ଟିଆଙ୍କର କର୍ମକ୍ଷେତ୍ର ଝାନ୍ସିରେ ମନୁବାଈ ବା ଲକ୍ଷ୍ମୀବାଈ ରାଜରାଣୀ ହୋଇ ବିରାଜିତ ଥିଲେ । ୧୮୫୦ରେ ନବଜାତ ସନ୍ତାନର ଜନ୍ମରେ ଆନନ୍ଦ ଓ ତିନି ମାସ ପରେ ପୁତ୍ରର ଶୋଚନୀୟ ମୃତ୍ୟୁରେ ତାଙ୍କର ଚିତ୍ତବିଷାଦ ଆସିଥିଲା । ୧୮୫୩ରେ ଝାନ୍ସିର ମହାରାଜା ଲକ୍ଷ୍ମୀବାଈଙ୍କର ସ୍ୱାମୀ ଗଙ୍ଗାଧର ରାଓ ମଧ୍ୟ ଝାନ୍ସି ପରିବାରକୁ ଅନ୍ଧକାରରେ ବିପଦ ମଧ୍ୟକୁ ଠେଲିଦେଇ ପ୍ରାଣତ୍ୟାଗ କରିଥିଲେ । ଫଳରେ ଝାନ୍ସି ରାଜମାତା ରାଣୀ ଲକ୍ଷ୍ମୀବାଈ ଦାମୋଦର ରାଓଙ୍କୁ ପୋଷ୍ୟପୁତ୍ର ଭାବରେ ଗ୍ରହଣ କରି ବଂଶ ରକ୍ଷା କରିବାକୁ ସ୍ଥିର କରିଥିଲେ । ସେହି ଶୋଚନୀୟ ପରି-ସ୍ଥିତିରେ ଜାଗିରଦାରୀର ଯନ୍ତ୍ରଣା ଠିକ ପଦ ବିଦେଶୀ ଶାସକ କୁଟି-

ଥାନ୍ତେ, ତେବେ ଏ ରକ୍ତାକ୍ତ ବିଦ୍ରୋହ ଏତେ ତୀବ୍ର ରୂପ ଧାରଣ କରି ନ ଥାନ୍ତା । ମାତ୍ର ବ୍ରିଟିଶ ଗଭର୍ଣ୍ଣମେଣ୍ଟର ଶୋଷକ କର୍ତ୍ତୃପକ୍ଷ ତାହା ଚିନ୍ତା କରିପାରି ନଥିଲେ; ଅଧିକନ୍ତୁ ଦାମୋଦର ରାଓଙ୍କୁ ନାମକୁ ମାତ୍ର ଝାନ୍‌ସି ବଂଶଧର ବୋଲି ଅସ୍ୱୀକାର କରିବାକୁ ବସିଲେ । ଫଳରେ ରାଣୀ ଅତ୍ୟନ୍ତ ବ୍ୟସ୍ତ ହୋଇ ପଡ଼ିଥିଲେ । ହତାଶ ହୋଇ ଯେତେବେଳେ ରାଣୀ କାତର ଭାବରେ ପ୍ରାର୍ଥନା କରନ୍ତି, ସେତିକିବେଳେ ଇଂରେଜ କର୍ତ୍ତୃପକ୍ଷ ସେଥିରେ ପ୍ରବଳ ବାଧା ଦେଇ ତାହାଙ୍କୁ ଅପରାଧିନୀ ଭଳି ଦୁର୍ବ୍ୟବହାର କରିବାରେ ଆନନ୍ଦ ଅନୁଭବ କଲେ । ଏହି ମର୍ମନ୍ତୁଦ ଯନ୍ତ୍ରଣା ରାଣୀ ସହି ପାରିଲେ ନାହିଁ । ସେ ଅତ୍ୟନ୍ତ ବ୍ୟାକୁଳ ହୋଇ ସହକର୍ମୀମାନଙ୍କୁ ଆହ୍ୱାନ କଲେ, ଯେଉଁମାନେ କି ଇଂରେଜ ଶାସନର ବିଷମୟ ପରିଣତି ବିଷୟ ଓ ତାର ପ୍ରତିରୋଧର ଉପାୟ ପୂର୍ବରୁ ଚିନ୍ତା କରୁଥିଲେ ।

ଗୃଖି ପାଦ୍ର ଆନ୍ଦୋଳନ ପରେ କିଛି ଦିନପାଇଁ ବିଠୁର ଚାଲି ଯାଇଥିଲେ । କିନ୍ତୁ ଫେରିବା ପରେ ପରେ ଲକ୍ଷ୍ମୀବାଈଙ୍କ ହସ୍ତାକ୍ଷରରେ ବିପ୍ଳବାଗ୍ନିର ନିମନ୍ତ୍ରଣ ଆସି ଯାଇଥିଲା । ଗୃଖି ନିମନ୍ତ୍ରଣ ପାଇ ହର୍ଷ-ବିଷାଦପୂର୍ଣ୍ଣ ମନରେ ପୁରୀ ତ୍ୟାଗ କରିଥିଲେ । ପୁରୀ ସିଂହଦ୍ୱାର ଅଳଙ୍କାର ଆଗରୁ ଚନ୍ଦନ ହଜୁରୀ 'ଚକାନୟନଙ୍କୁ ପତିତ କହି' ନାମକ ପ୍ରସିଦ୍ଧ ପଦ୍ୟ ରଚନା କରି ଶ୍ରୀ ନୀଳାଦ୍ରିନାଥ ଜଗନ୍ନାଥଙ୍କ-ଠାରେ ଅଭିମାନଭରା ଅନୁରୋଧ କରି ଦେଶକୁ ଚଣ୍ଡାଳସ୍ୱରୂପୀ ଇଂରେଜଙ୍କର ଅତ୍ୟାଚାରରୁ ଗ୍ରାସରୁ ରକ୍ଷା କରିବାକୁ ପ୍ରାର୍ଥନା କରିଥିଲେ ।

ଧର୍ମାମାଳବୁହା ଦୁର୍ଦ୍ଦଶା ସହୁ
ଚଣ୍ଡାଳ ଗ୍ରାସୁଅଛୁ ଗୃହୁଁ ଗୃହୁଁ,
ଭଣ୍ଡାରେ ଖଣ୍ଡା ନାହିଁ କି ମହିମା

ଗଣ୍ଡିଆଙ୍କର ଦଣ୍ଡ ନାହିଁ ମହିମା,
ଧଣ୍ଡା ଯାଉଅଛି ଫାଟି ହେ,
ଥଣ୍ଡା କର କୃପା- ଜଳ ବୃଷ୍ଟି କରି
ମୋ ଶତ୍ରୁ-ଗୃହକୁ ପାଟି ହେ ।

ଜଗନ୍ନାଥଙ୍କର ଅପାର କରୁଣାକୁ ପାଥେୟ ଭାବରେ ଧରି ଗୃଖି ସିପାହି-ବିଦ୍ରୋହରେ ଯୋଗ ଦେବାପାଇଁ ମିରଟ ଯାତ୍ରା କଲେ । ସେଠାରୁ ସେ ବିଦ୍ରୋହରେ କେଉଁ ଆକାରରେ ଯୋଗ ଦେଲେ ବା ଭାଗ ନେଇଥିଲେ ତାହା କୁହାଯାଇ ପାରିବ ନାହିଁ । ମାତ୍ର ୧୮୫୭ ମଇ ୨୪ ତାରିଖରେ ସେ ଝାନ୍ସିରେ ପହଞ୍ଚିଲେ ।

—ଛଅ—

ଝାନ୍ସି ପରିବାରର ପୁରୋହିତ ଦୀକ୍ଷିତ ପଣ୍ଡା ଝାନ୍ସିରେ ପହଞ୍ଚିବା ବେଳକୁ ସେଠାର ଅବସ୍ଥା ଅତି ଅସମ୍ଭାଳ ହୋଇ ଉଠିଥିଲା । ରାଣୀଙ୍କ ପାଖକୁ ସଠିକ ସମ୍ବାଦ ପହଞ୍ଚିପାରୁ ନ ଥିଲା । ବିଶ୍ବସ୍ତ ଲୋକମାନେ ନାନା କାରଣରୁ ନୀରବ ରହୁଥିଲେ । ଦେୱାନ ଲକ୍ଷ୍ମଣ ରାଓ ସେତିକିବେଳକୁ ମରିଯାଇଥିଲେ । ନୂଆ ଦେୱାନ ବିଠୁବାବୁ ବିଶେଷ ଦକ୍ଷ ନ ଥିବାରୁ ରାଣୀ ଚିନ୍ତିତ ହୋଇପଡ଼ିଥିଲେ । ଏହି ଅବସ୍ଥାରେ ଗୃଖି ପହଞ୍ଚି ଯିବାରୁ ସମସ୍ତଙ୍କ ମନରେ ସମ୍ୟକ୍ ଆନନ୍ଦ ଦେଖା ଦେଇଥିଲା, ଓ ଗୃଖି ଆପଣାର ବହୁମୁଖୀ ପ୍ରତିଭା ପ୍ରଦର୍ଶନର ସୁଯୋଗ ପାଇଥିଲେ । ମାତ୍ର ତାହା କାର୍ଯ୍ୟରେ ପରିଣତ ହୋଇ ପାରିଲା ନାହିଁ । କର୍ଣ୍ଣେଲ ସୂଚୀ ହେଉ ହେଉ ଆକସ୍ମିକ ଭାବରେ ସାର୍ ହ୍ୟୁରୋ ଝାନ୍ସି ଆକ୍ରମଣ କରିଦେଇଥିଲେ । ଲକ୍ଷ୍ମୀବାଈ ଏହି ଅବସରରେ ଇନ୍ଦୋର ପଲିଟିକାଲ୍ ଏଜେଣ୍ଟଙ୍କ ନିକଟକୁ ଏକ ସନ୍ଧିପତ୍ର

ପଠାଇଲେ । ସେହି ସନ୍ଧିପତ୍ର ଘେନି ଏକ ବିଶ୍ୱସ୍ତ ରାଜକର୍ମଚାରୀ, ଗୃହି ଖୁଣ୍ଟିଆ ଓ ଜଣେ ଇଂରେଜଙ୍କ ଉକିଲ ଇନ୍ଦୋର ଯାତ୍ରା କଲେ । ରାତ୍ରରେ ସମ୍ବାଦବାହକମାନେ ଇସାଗଡ଼ ନାମକ ସ୍ଥାନରେ ରହିଲେ । ସେଠାରେ ସେହି ଉକିଲ ଓ ମହାରାଷ୍ଟ୍ରୀ ଦୂତକ ରାମଚନ୍ଦ୍ର ବାଜରାଓ ରାଣୀଙ୍କର ବିରୁଦ୍ଧରେ ସିଦ୍ଧାନ୍ତ ଗ୍ରହଣ କରନ୍ତେ, ଗୃହି ସେଥିରେ ପ୍ରବଳ ପ୍ରତିବାଦ କଲେ । ଫଳରେ ଉକିଲ ବାବୁଙ୍କ ଦ୍ୱାରା ତାହାଙ୍କୁ ବନ୍ଦୀ ଭାବରେ ରହିବାକୁ ପଡ଼ିଲା । ଝାନ୍ସିର ଏତେ ବଡ଼ ବିପଦ ସମୟରେ ସାକ୍ଷିନାମା ଇନ୍ଦୋର ଯାଇପାରିଲା ନାହିଁ । ପରନ୍ତୁ ନାନା ଜାଲ୍ ଛାଟି ଝାନ୍ସି ଦରବାରକୁ ମିଥ୍ୟା ସମ୍ବାଦ ଦେଇଥିଲା । ଏଥିରେ ଗୃହି ନିରାଶ ହୋଇ ପଡ଼ିଲେ ଓ ଇସାଗଡ଼ଠାରୁ ଏକ ପତ୍ରରେ ଏ ସମସ୍ତ ବିଷୟ ଜଣାଇଥିଲେ । ଶେଷରେ ଝାନ୍ସି ରାଜବଂଶ ଉପରକୁ ବିପଦ ମାଡ଼ି ଆସିଲା । ଗୃହି ଇସାଗଡ଼ରୁ ଝାନ୍ସି ଫେରିଲାବେଳକୁ ଘୋର ଯୁଦ୍ଧ ଆରମ୍ଭ ହୋଇଯାଇଥିଲା । ଝାନ୍ସି ଗଡ଼ବାସୀ ସମସ୍ତେ ପ୍ରାଣପଣ ଚେଷ୍ଟା କରିଥିଲେ । ମହାରାଣୀଙ୍କ ସମେତ ଝାନ୍ସି କିଲ୍ଲାକୁ ଅକ୍ଷୁଣ୍ଣ ରଖିବା ନିମନ୍ତେ ସେମାନେ ପ୍ରବଳ ଉଦ୍ୟମ କରିବା ସତ୍ତ୍ୱେ ଅବସ୍ଥା ଅସମ୍ଭାଳ ହୋଇଥିଲା । ନାନା ଦୁଃସ୍ୱପ୍ନ ଦେଖିବା ହେତୁ ରାଣୀଙ୍କର ମାନସିକ ଅବସ୍ଥା ଅତ୍ୟନ୍ତ ଖରାପ ହୋଇ ଉଠିଥିଲା । ଫଳରେ ଇଂରେଜସୈନ୍ୟ ଝାନ୍ସିଗଡ଼କୁ ବିକଟ ଶ୍ମଶାନରେ ପରିଣତ କରି ରାଣୀଙ୍କ ସମେତ କେତେକ ବିଶ୍ୱସ୍ତ ବ୍ୟକ୍ତି କୁଲପି ପଳାଇଗଲେ । ସେହି ପଳାତକ ଦଳମଧ୍ୟରେ ଗୃହି ଅନ୍ୟତମ । ରାତି ରାତି ପଳାୟନ କରିବା ବେଳେ ଦନ୍ତିଆ ନାମକ ସ୍ଥାନରେ ମୋରୋପନ୍ତ ଧରା ପଡ଼ିଥିଲେ । ଗୃହି ଆପଣାର ପ୍ରାଣରକ୍ଷା ନିମନ୍ତେ ତାଙ୍କର ପ୍ରସିଦ୍ଧ ଖାର୍ଦ୍ଧା ଅଞ୍ଚଳମଧ୍ୟକୁ ଚାଲି ଯାଇଥିଲେ । ସେଠାରେ ତାଙ୍କର ପରମମିତ୍ର ସୁଖଦେବ ରାଓ, ତାଙ୍କର ଏତାଦୃଶ ଭ୍ରମପୂର୍ଣ୍ଣ କାର୍ଯ୍ୟର ନିନ୍ଦା କରିଥିଲେ ଓ ଏପରି ଶିକ୍ଷା ଦେଇଥିଲେ ଯେ, ଗୃହି ଅନୁତପ୍ତ ହୋଇ

ବୈଷ୍ଣବ ବେଶରେ ମହାରାଣୀଙ୍କର ପଦାଙ୍କ ଅନୁସରଣ କରି ଗୋଆଲିଅର ଯାତ୍ରା କରିବାକୁ ସ୍ଥିର କରିଥିଲେ ।

ଏହାମଧ୍ୟରେ ରାଣୀ ଗୋଆଲିଅରରେ ପହଞ୍ଚି ଯାଇଥିଲେ । ସେତେବେଳେ ଗୋଆଲିଅରରେ ଇଂରେଜ ବାହିନୀ ପରାସ୍ତ ହୋଇଥିଲେ ଓ ସେଠାର ଅବସ୍ଥା ଅନୁକୂଳ ଥିଲା । ଋଷି ସେଠାରେ ପହଞ୍ଚିଲାବେଳେ ଗୋଆଲିଅର ରାଜପରିବାରରେ ବନ୍ଧୁ ବିଜୟ-ଉତ୍ସବ ପାଳିତ ହେଉଥିଲା । ବ୍ରାହ୍ମଣମାନଙ୍କୁ ମିଷ୍ଟାନ୍ନଭୋଜନରେ ଆପ୍ୟାୟିତ କରି ଯାଉଥିଲା । ସେହି ସମୟରେ ବୈଷ୍ଣବ-ବେଶଧାରୀ ଋଷି ସେଠାରେ ଅଭ୍ୟାଗତ ଭାବରେ ପହଞ୍ଚି ଭୋଜନଶାଳାରେ ମହାରାଣୀ ଲକ୍ଷ୍ମୀବାଈଙ୍କୁ ଦେଖିବାର ସୁଯୋଗ ପାଇଥିଲେ । ସେଠାରେ ରାଣୀଙ୍କର ଅବସ୍ଥା ଓ ଆପଣାର ଅବସ୍ଥାରେ ଋଷି ନିତାନ୍ତ ମ୍ରିୟମାଣ ହୋଇ ଭୋଜନଶାଳାରୁ ଉଠି ପଳାଇଥିଲେ ଓ କୋଠାଲିସରାଇ ନିକଟରେ ଏକ କୁଟୀର ନିର୍ମାଣ କରି କାଳଯାପନ କରିବାକୁ ଲାଗିଲେ । ଏଣେ ଗୋଆଲିଅରରେ ପୁଣି ଯୁଦ୍ଧ-ଡିଣ୍ଡିମ ବାଜି ଉଠିଲା । ଲକ୍ଷ୍ମୀବାଈ ସେଠାରେ ଅନ୍ତିମ ସମରରେ ଝାସ ଦେଲେ । ମାତ୍ର ଭାରତର ସ୍ୱାଧୀନ-ରବି ଅସ୍ତମିତ ହେଲା । ଯବନ-ଅସ୍ତ୍ରାଘାତରେ ଭାରତର ସର୍ବଶ୍ରେଷ୍ଠ ରମଣୀ ଢଳି ପଡ଼ିଲେ । ଯେତେବେଳେ ଲକ୍ଷ୍ମୀବାଈଙ୍କର ଅନ୍ତିମ ବାଣୀ ଅତି କାତର କଣ୍ଠରୁ "ଯବନ-ହସ୍ତରେ ମତେ ଦିଅ ନାହିଁ" ବୋଲି ଶୁଭୁଥିଲା, ସେତିକବେଳେ ରାମଚନ୍ଦ୍ର ରାଓ ଶରବିଦ୍ଧ ଶରୀରକୁ ଋଷିଙ୍କ କୁଟୀରମଧ୍ୟକୁ ନେଇଯାଉଥିଲେ । ସେହିଠାରେ ମୃତଦେହକୁ ଗଙ୍ଗାଜଳରେ ସ୍ନାନ କରାଇ ଆପଣାର କର୍ତ୍ତବ୍ୟ ଶେଷ କଲେ ।

ଯୁଦ୍ଧାବସାନ ହେଲାରୁ ବ୍ରିଟିଶବାହିନୀଠାରୁ ରକ୍ଷା ପାଇବା ନିମନ୍ତେ ରାମଚନ୍ଦ୍ର ଦେଶମୁଖ, ଗଙ୍ଗାଧର ରାଓ ଓ ଋଷି ଆତ୍ମଗୋପନ

କ୍ରମଶଃ ନିବିଡ଼ ଅରଣ୍ୟମଧ୍ୟରେ ବୁଲିବାକୁ ଲାଗିଲେ । ଦିନେ ଅକସ୍ମାତ୍ ଗୋଟିଏ ଗଛର ଗଣ୍ଡିରେ ଆତ୍ମଗୋପନ କରୁଥିବାବେଳେ ଇଂରେଜ ସେନା ସେମାନଙ୍କଠାରୁ ଗଙ୍ଗାଧର ରାଉଙ୍କୁ ଛଡ଼ାଇନେଲେ । ଋଷି ସେଠାରୁ ଚାଲିଯାଇ, ରମ୍ଭପଲ୍ଲୀ, ସୁଲତାନପୁର, ଓନାଓଁ ପ୍ରଭୃତିରେ ଆତ୍ମଗୋପନ କରି ଅବଶେଷରେ କାଲିଭାଙ୍ଗରରେ ପହଞ୍ଚିଲେ । ସେଠାରେ ତତ୍କାଳୀନ ରାଜା ହନୁମନ୍ତ ସିଂ ତାହାଙ୍କର ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କୁ ରାଜପଣ୍ଡା ଭାବରେ ସ୍ୱୀକାର କରି ବହୁମାନ୍ୟ ପ୍ରଦାନ କରିଥିଲେ । ସେହିଠାରେ ଋଷି ଚାରିବର୍ଷ କାଳ ରହିଥିଲେ । ସେତେବେଳେ ଗୋଟିଏ କୌତୁକାବହ ଘଟଣା ଘଟିଥିଲା ।

## —ସାତ—

ଯେତେବେଳେ ଋଷି କାଲିଭାଙ୍ଗରରେ ବସବାସ କରୁଥିଲେ, ସେତେବେଳେ ରାମଚନ୍ଦ୍ର ରାଉ ନାମକ ଜଣେ ବ୍ୟକ୍ତି ସ୍ଥାନସିଦ୍ଧରୁ ପୁରୀ ଆସି ଋଷି ମରି ଯାଇଥିବା ସମ୍ବାଦ ଦେବା ଫଳରେ ୧୭୮୫ ଶକାବ୍ଦ ମିଥୁନ ୧୪ ଦିନ ଦିନ ପୁରୀରେ ମହା ଶୋକଚ୍ଛାୟା ଖେଳି ଯାଇଥିଲା । ମନ୍ଦିରର ନୀତିରେ ବ୍ୟତିକ୍ରମ ହେବା ସଙ୍ଗେ ସଙ୍ଗେ ମହାଦୁଃଖ ପ୍ରକାଶ ପାଇଥିଲା । ସେହି ଦୁର୍ଦ୍ଦିନ ଋଷିଙ୍କର ସ୍ତ୍ରୀଙ୍କ ପକ୍ଷରେ କେତେ ମର୍ମନ୍ତୁଦ ହୋଇଥିବ, ତାହା ସହଜେ ଅନୁମେୟ । ସେ ବୈଧବ୍ୟ ଯନ୍ତ୍ରଣାରେ ଅଧୀର ହୋଇ ଅତୀବ କଷ୍ଟରେ ପତିତ ହେବା ସଙ୍ଗେ ସଙ୍ଗେ ଦକ୍ଷିଣ ପରିବାର ଏଥିରେ ବ୍ୟଥିତ ହୋଇ ଉତ୍ତାରଙ୍କ ସହ ଅଶୌଚ ପାଳନ କଲେ । ସେତେବେଳେ ତାଙ୍କର ଶିଶୁ ସପ୍ତମ ବର୍ଷରେ ପଦାର୍ପଣ କରୁଛନ୍ତି; ତେଣୁ ସନ୍ତାପ ଅଧିକତର ହୋଇଥିବ । ଦୀର୍ଘ ସାତ ବର୍ଷ ଏହି ଅବସ୍ଥାରେ ବିତିଗଲା । ବନ୍ଧକା ସୁନ୍ଦରମଣି କଠୋର

ବୈଧବ୍ୟ ବ୍ରତ ପାଳନ କରି ଜୀବନକୁ ତୁଚ୍ଛଭାବରେ ଅତିବାହିତ କରୁଥିବାବେଳେ ୧୬୮୫ ମସିହା କୁମାରପୂର୍ଣ୍ଣିମା ସନ୍ଧିରେ ଗୃହିଣ ଦିବ୍ୟସିଂହ ମିଶ୍ରଙ୍କ ଘରଠାରେ ପହଞ୍ଚିଥିଲେ । ଗୃହିଣଙ୍କର ଆକସ୍ମିକ ଆଗମନରେ ସମସ୍ତଙ୍କ ମନରେ ହର୍ଷବିଷାଦ ଖେଳି ଯାଇଥିଲା । କପର ଏହି ପରିସ୍ଥିତି ସୁଧୁରିବ, ଏଥିପାଇଁ ସମସ୍ତେ ବ୍ୟସ୍ତ ହୋଇ ଉଠିଲେ । କିନ୍ତୁ ଚନ୍ଦନ ହଜୁରିଙ୍କର କବିପ୍ରାଣ ରସିକତାରେ ପୂରି ଉଠିଲା । ସେ ବୈଧବ୍ୟବେଶଧାରିଣୀ ପତ୍ନୀଙ୍କୁ ଦେଖିବା ନିମନ୍ତେ ଜଗନ୍ନାଥ ମନ୍ଦିରରେ ପ୍ରତୀକ୍ଷା କରିବାକୁ ଲାଗିଲେ । ବିଧବା ପତ୍ନୀ ବଂଶର ଶୁଭାକାଂକ୍ଷିଣୀ ପାଟ୍ଟନାନୀ ସାଙ୍ଗରେ କଠୋର ଶୈତ୍ୟ ମଧ୍ୟରେ ଜଗନ୍ନାଥଦର୍ଶନକୁ ଆସିଥିବାବେଳେ ଏହି ଅପୂର୍ବ ମିଳନ ହେବ ବୋଲି ପାଟ୍ଟନାନୀ ଗୁପ୍ତ ବ୍ୟବସ୍ଥା କରିଥିଲେ । ଗୃହିଣ ହଠାତ୍ ପହଞ୍ଚିବା ପରେ ପାଟ୍ଟନାନୀଙ୍କ ମାଧ୍ୟମରେ ଏହି ଆକସ୍ମିକ ମିଳନ ଘଟିଲା, ଯାହାର ମଧୁରତାର ବର୍ଣ୍ଣନା କବିଗୃହିଣୀସାପେକ୍ଷ । ସେହି ସମୟରୁ ଏକ ପ୍ରବଚନ ପୁରୀ ତଥା ଓଡ଼ିଶାରେ ଉଦାହରଣ ଭାବରେ କୁହାଯାଉଅଛି—

ନଈରେ ବାଲିଆ ଚହଟିଲା
କଇଁଳ ସିନ୍ଦୂର ନାଆ ଲୋ ସଙ୍ଗ
ପୁଣି ଗୃହିଣଆ ନେଇଉଠିଲା ।

ଏ ଘଟଣା କ୍ଷଣକାଳମଧ୍ୟରେ ସହର ତମାମ ବ୍ୟାପିଗଲା । ମୁକ୍ତିମଣ୍ଡପ ପଣ୍ଡିତ ମହାସଭା, ସନାତନ ଧର୍ମ ସମ୍ବନ୍ଧୀୟ ସଭାମାନ ଦେଶ ନିମନ୍ତେ ଗୃହିଣଙ୍କ ସାଧନାକୁ ତାରିଫ୍ କରିବା ସଙ୍ଗେ ସଙ୍ଗେ ଏବଂବିଧ ପରିସ୍ଥିତରେ ସଧବା ସୁଲଭ କାର୍ଯ୍ୟ ହୋଇଯିବା ନିତାନ୍ତ ଅବଶ୍ୟକ ବୋଲି ଲିଖିତ ମନ୍ତବ୍ୟ ଦେଇଥିଲେ । ତେଣୁ କାଚ ସିନ୍ଦୂର ଉତ୍ସବ ଅତି ଅଡ଼ମ୍ବରସହକାରେ ପ୍ରତିପାଳିତ ହୋଇଥିଲା । ଗୃହିଣ

ଜଗନ୍ନାଥଙ୍କ କୌଳିକ ସେବାରେ ଆତ୍ମନିୟୋଗ କରି ଆନନ୍ଦ-ବିଷାଦରେ କାଳାତିପାତ କରିବାକୁ ଲାଗିଲେ ।

## —ଆଠ—

ଜଗନ୍ନାଥଙ୍କ ଚରଣତଳେ ସଭକ୍ତି ଅର୍ଚ୍ଚନା କରି ଆନନ୍ଦରେ ଜୀବନଯାପନ କରିବା ମଧ୍ୟରେ ମଧ୍ୟ ଋଷିଙ୍କ ଶାନ୍ତିରେ ରହିବାର ସୁଯୋଗ ନ ଥିଲା । ରାଜ୍ୟଶାସକମାନେ ବିପ୍ଳବାଗ୍ନି ପୂର୍ଣ୍ଣ ନିର୍ବାପିତ ହୋଇଥିଲେ ମଧ୍ୟ ତାର ଜ୍ୱଳନ୍ତ ଅଗ୍ନିକଣାମାନ ଯେ ସଂପୂର୍ଣ୍ଣ ନିର୍ବାପିତ ହୋଇଯିବ, ଏହା ବିଶ୍ୱାସ କରି ନ ପାରି ନାନା ଆଶଙ୍କା ପୋଷଣ କରିଥିଲେ । ଫଳରେ ୧୮୬୫ ମସିହାରେ ଋଷିଙ୍କ ଘର ହଠାତ୍ ଘେରାଉ ହେଲା । ମହା ଆତଙ୍କ ଖେଳିଗଲା । ସେହି ଘେରାଉରେ ବହୁ ଐତିହାସିକ ଦଲିଲ ଓ ପ୍ରମାଣ ପୁଲିସର କରଗତ ହେଲା; ଯାହା ବା କିଛି ନକଲ ପ୍ରସ୍ତୁତ ରହି ଯାଇଥିଲା, ତାହାରି ଉପରେ ନିର୍ଭର କରି ତାଙ୍କର ଅଦ୍ଭୁତ ଜୀବନୀର ରୂପରେଖ ସୃଷ୍ଟି ହେଉଛି । ଋଷି ଏଥିରେ ବିବ୍ରତ ହୋଇଥିଲେ । ଉତ୍ତର ଜୀବନର ଶାନ୍ତିରେ ବ୍ୟାଘାତ ନ ଘଟାଇବାକୁ ସେ ଅନୁରୋଧ କରିଥିଲେ, ମାତ୍ର ୧୮୬୫ ମସିହାର ପରବର୍ତ୍ତୀ ମାସରେ କଟକ କମିଶନର ତାଙ୍କର ଗୁପ୍ତ ବୃତ୍ତାନ୍ତ ବିଷୟ ଯେ ସରକାର ବାହାଦୁର ଅବଗତ ହୋଇଛନ୍ତି ଏହା ଜଣାଇ ଦେଇଥିଲେ । ସର୍ବସାଧାରଣ ମଧ୍ୟ ଜାଣିଲେ ଯେ, ସେହି ଅଗ୍ନିକଣା ଏତେ ସହଜରେ ଲିଭି ନ ପାରେ ।

ଅଜିମୁଲା ଖାଁ ଭାରତୀୟ ସିପାହି-ବିଦ୍ରୋହର ଏକ ପ୍ରସିଦ୍ଧ ବିପ୍ଳବୀ । ସେ ପ୍ରୟାଗ, ସତୀଚଉରା ପ୍ରଭୃତି ସ୍ଥାନରେ ଇଂରେଜ-ମାନଙ୍କର ପ୍ରବଳ କ୍ଷତି କରିଥିଲେ । ଅସଂଖ୍ୟ ଶ୍ୱେତାଙ୍ଗ ତାଙ୍କଦ୍ୱାରା ନିହତ ହୋଇଥିବା ଇତିହାସ ସ୍ୱୀକାର କରୁଅଛି । କାନପୁରର

ଭାଗ୍ୟବିଧାତା ଅଜାବୁଲ ଖାଁଙ୍କ ସହଙ୍ଗ ଗୃହି ଖୁଣ୍ଟି ଅଙ୍କର କାଉଳ ସମ୍ପର୍କ ଥିଲା କେଜାଣି, ସେ ଆତ୍ମଗୋପନ କରିବାକୁ ପୁରୀରେ ପହଞ୍ଚିଲେ । ଗୃହି ଅଭିଜ୍ଞ ସହକର୍ମୀଙ୍କୁ ନିରାପଦରେ ରଖିବାକୁ ଏକ କୌଶଳ କଲେ । ଗୃହି ଯେଉଁଠାରେ ବଳଚଢ଼ା ଭରୁଥିଲେ, ସେଠାରେ ରାଜା ଉପସ୍ଥିତ ରହୁଥିବାରୁ ତାହା ଦିବ୍ୟସିଂହ ଟୋଠା ବୋଲି ନାମିତ ହୋଇଥିଲା । ଗୃହି ଠେକୁଥିବା ପ୍ରସ୍ତର ଏବେ ସୁଦ୍ଧା ସେହି ଟୋଠାର ମହାବୀରଙ୍କ ପାଖେ ପଡ଼ିଛି । ଗୃହି ସେହି ଟୋଠା ପାଖ ଚକ୍ରତୀର୍ଥ ଟୋଠାରେ ଅଜାବୁଲ ଖାଁଙ୍କୁ ଫକୀର ବେଶରେ ରଖାଇ ଥିଲେ ଓ ତାଙ୍କୁ ଆଲ୍ଲା ବୋଲି କହି ଅତି ପବିତ୍ର ଭାବରେ ତାଙ୍କର ଆଧ୍ୟାତ୍ମିକ କ୍ଷମତା ବିଷୟରେ ପ୍ରଚାର ଚଳାଇଲେ । ଫଳରେ ତାହା ଧର୍ମବିଶ୍ୱାସୀମାନଙ୍କର ଗନ୍ତବ୍ୟ ହୋଇଥିଲା ଓ ପ୍ରସିଦ୍ଧ ସିପାହି-ବିଦ୍ରୋହୀ ଅଜାବୁଲ ସେଠାରେ ଆଲ୍ଲା ପଦବାଚ୍ୟ ହୋଇ ରହୁଥିଲେ । ସେହି ଟୋଠା ଆଲ୍ଲା ଟୋଠା ନାମରେ ସେହି ଦିନଠାରୁ ପ୍ରଖ୍ୟାତ ହେଲା । ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ସେହି ନାମରେ ସ୍ଥାନଟି ପରିଚିତ । ସରକାର ଏହି ବିଷୟ ଅବଗତ ହୋଇଥିଲେ ମଇ ୧୪ ତାରିଖରେ । କଟକ କମିଶନର ଗୃହିଙ୍କୁ ଏହି ଅପରାଧରେ ସଂପୃକ୍ତ ଥିବା ସୁରୁଇ ପ୍ରତିଦିନ ଥାନାରେ ହାଜର ହେବାକୁ ଆଦେଶ ଦେଇଥିଲେ । ଗୃହି ଅନ୍ତିମ ଜୀବନରେ ଏହିପ୍ରକାର କାର୍ଯ୍ୟସୂଚୀକୁ ଅନ୍ତରର ସହିତ ଅନୁମୋଦନ କରୁ ନ ଥିଲେ ମଧ୍ୟ ବାଧ୍ୟ ହୋଇ ତାହା କରି କୌଣସି ପ୍ରକାରେ ସମୟ କଟାଇ ଦେବାକୁ ଲାଗିଲେ ।

ଏହିଅବସରରେ ଗୃହି କେବଳ ଯେ ଜଗନ୍ନାଥଙ୍କ ସେବାରେ ଆତ୍ମ-ନିୟୋଗ କରୁଥିଲେ ତାହା ନୁହେଁ, ଅବସରବିନୋଦ ପାଇଁ ନିୟମିତ ବଳଚଢ଼ା ଓ ଯାତ୍ରୀଭୟଚଢ଼ାକୁ ଶ୍ରେଷ୍ଠ ବ୍ରତ ବୋଲି ଗ୍ରହଣ କରି-ଥିଲେ । ସହରର ସମସ୍ତ ଆଖଡ଼ାରେ ସେ ବଳଚଢ଼ା ଓ ବ୍ରହ୍ମଚର୍ଯ୍ୟ

ପାଳନ ତଥା ଦେଶାତ୍ମବୋଧର ଏଭଳି ଉଦ୍ରେକନା ସୃଷ୍ଟି କରିଥିଲେ ଯେ, ସନ୍ଦେହୀ ଲୋକମାନେ ତାହାଙ୍କର କାର୍ଯ୍ୟକଳାପକୁ ନିତାନ୍ତ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ । ଏହି ସମୟରେ ଦିବ୍ୟସିଂହ ଦେବ ତାଙ୍କର ବଳପରୀକ୍ଷା କରିବା ନିମନ୍ତେ ଇଚ୍ଛା ପ୍ରକାଶ କଲେ । ସହରର ସମସ୍ତେ ଏଭଳି ପରୀକ୍ଷାକୁ ସ୍ୱାଗତ ଜଣାଇ ବହୁ ସଂଖ୍ୟାରେ ବଡ଼ଦାଣ୍ଡରେ ଜମା ହୋଇ ରହିଲେ । ରାଜା ବିଜେ ହେଲେ ପରୀକ୍ଷାର ସର୍ତ୍ତ ଘୋଷିତ ହେବ, ଏହି ପ୍ରତୀକ୍ଷାରେ ଲୋକମାନେ ଉତ୍କଣ୍ଠିତ ଚିତ୍ତରେ ବସିଅଛନ୍ତି, ଏପରି ଅବସ୍ଥାରେ ଗୃହି ସହକର୍ମୀମାନଙ୍କୁ ନେଇ ନୀରବରେ ପରୀକ୍ଷାଳୟରେ ପ୍ରବେଶ କଲେ । ରାଜା ବିଜେ କରିବା ମାତ୍ରେ ଏକ କଠୋର ପରୀକ୍ଷା ସର୍ତ୍ତ ପ୍ରଦାନ କଲେ ।

ପୂର୍ବେ ଜଗନ୍ନାଥଙ୍କ ରଥର ଚକ ବର୍ତ୍ତମାନର ରଥଚକଠାରୁ ତିନିଗୁଣ ମୋଟା ଥିଲା । ବର୍ତ୍ତମାନ ରଥଚକ ଯେତେ ବଳିଷ୍ଠ ଲୋକ ହେଲେ ମଧ୍ୟ ଗୃହଜଣଙ୍କରୁ କମ୍ ଲୋକ କଦାପି ଗଡ଼ାଇ ନେଇପାରିବେ ନାହିଁ । ତେବେ ସେତେବେଳର ଚକ କେତେ ଓଜନ ଓ କଠୋର ବଳସାପେକ୍ଷ ହୋଇଥିବ, ସମସ୍ତେ ଉପଲବ୍ଧି କରିପାରୁଥିବେ । ମାତ୍ର ରାଜା ସେଥିରୁ ଦୁଇ ଗୋଟି ଚକ ଦୁଇହାତରେ ଗଡ଼ାଇନେବାକୁ ପରୀକ୍ଷା ସର୍ତ୍ତରୂପେ ଘୋଷଣା କଲେ । ଦର୍ଶକ ଏଥିରେ ସନ୍ତୋଷ ପ୍ରକାଶ କରିବାକୁ ଯାଉଅଛନ୍ତି, ଗୃହି ଜଗନ୍ନାଥଙ୍କୁ ପ୍ରଣାମ କରି ଦୁଇ ବାହୁଦ୍ୱାରା ଦୁଇଗୋଟି ଚକ ଗଡ଼ାଇ ଥୋକେ ବାଟ ନେଇଗଲେ । ଦର୍ଶକମାନେ ଅପୂର୍ବ ଆନନ୍ଦ ସହ ଗୃହିଙ୍କର ଏତାଦୃଶ ସାଧନାକୁ ପ୍ରଶଂସା କରିବାକୁ ଲାଗିଲେ । ରାଜା ଏଥିରେ ମୁଗ୍ଧ ହୋଇ ପ୍ରତିବର୍ଷ ଦୁଇଗୋଟି ଚକ ପାଇବା ନିମନ୍ତେ ସନନ୍ଦ ପ୍ରଦାନ କରିଥିଲେ ଓ ତତ୍କାଳୀନ ୧୬ ଗୋଟି ସୁନାଭେକ ମୋହରେ ଉପହାର ଦେଇ-

ଥିଲେ । ଏହିପରି ନାନା ସାଧନାରେ ଗୁପ୍ତ ସାଧକଙ୍କର ଜୀବନ ଅତିବାହିତ ହେବାକୁ ଲାଗିଲା । ଏହି ସମୟରେ ତାଙ୍କର ଶାସ୍ତ୍ରିକ ଚର୍ଚ୍ଚା ଛାଡ଼ିବାର ଇଚ୍ଛା ମଧ୍ୟ ଦେଖାଗଲା । ସେତିକିବେଳକୁ ଏକ ଘଟଣାରେ ତାଙ୍କର ପରିବର୍ତ୍ତନ ହୋଇ ଯାଇଥିଲା । ଫଳରେ, ଜାତ ଜଣେ ବଳିଷ୍ଠ ବ୍ୟକ୍ତିଙ୍କ ପରିବର୍ତ୍ତେ ବଳିଷ୍ଠ ସାହିତ୍ୟରଥୀ ଲାଭ କଲା ।

—ନଅ—

ବୋଲଗଡ଼ରେ 'ପଦ୍ମନାଭ ବୀର' ବୋଲି ଜଣେକ ଖଣ୍ଡାୟତ ଶାସ୍ତ୍ରିକ ବଳାଧାନରେ ଗୃହିଙ୍କ ସମକକ୍ଷ ଥିଲେ । ମାତ୍ର ଗୃହିଙ୍କର ସୁଖ୍ୟାତି ଯୋଗୁଁ ସେ ବଳ ପରୀକ୍ଷାର ସୁଯୋଗ ପାଇ ପାରୁ ନ ଥିଲେ । ଏହି ସମୟରେ ବୋଲଗଡ଼ ମେଘୁଆ ସାଆନ୍ତ, ଦିବ୍ୟସିଂହ ଦେବଙ୍କୁ ପ୍ରବର୍ତ୍ତାଇ ଏକ ପରୀକ୍ଷା କରାଇବା ନିମନ୍ତେ ଅନୁମତି ପାଇଲେ । ପଦ୍ମନାଭ ପୁରୀ ଆସି ଚନ୍ଦନ ହଜୁରୀଙ୍କ ସଙ୍ଗେ ବଳ ପରୀକ୍ଷାର ସୁଯୋଗକୁ ଅପେକ୍ଷା କରି ରହିଲେ । ଜଗନ୍ନାଥଙ୍କର ସାହାଣମେଲା ଦର୍ଶନ ହେଉଛି, ଅତ୍ୟଧିକ ଭିଡ଼, ସହସ୍ର ସହସ୍ର ଲୋକ ଧୋକଡ଼ି ନାମକ ଦ୍ୱାରଠାରେ ଜମା ହୋଇଛନ୍ତି, ସେହିଠାରେ ଦୁଇବୀରଙ୍କର ସାକ୍ଷାତ ହେଲା । ଶରୀରଗଠନ ଓ ଗାମ୍ଭୀର୍ଯ୍ୟ ମଧ୍ୟ ଦେଇ ଉଭୟେ ପରସ୍ପରକୁ ଦେଖିବା ବେଳେ ଚନ୍ଦନ ହଜୁରୀ ଗୃହି ଖୁଣ୍ଟିଆଙ୍କୁ ପଦ୍ମନାଭ ବୀରଙ୍କ ପରିଚୟ ଦେଲେ ଓ ସେ ତାଙ୍କ ସଙ୍ଗେ ବଳଚର୍ଚ୍ଚା କରିବାକୁ ଆସିଛନ୍ତି ବୋଲି ପ୍ରକାଶ କଲେ । ସେହି ସ୍ଥାନରେ ପରୀକ୍ଷା କାର୍ଯ୍ୟ ଆରମ୍ଭ ହେଲା । ତହୁଁ ଗୃହି ବେହରଣ ଦକ୍ଷିଣ ଦ୍ୱାରକୁ ଖୋଲିଆସି ଦ୍ୱାରଟି ଭିତରୁ ବନ୍ଦ କରିଦେବାକୁ ଚେଷ୍ଟା କଲେ, ସେତେବେଳେ ପଦ୍ମନାଭ ଭିତରେ

ପଶିବାକୁ ଚେଷ୍ଟା କରିଦେ । ଏହି ବିଶାଳ ଦ୍ୱାରମଧ୍ୟରେ ଉଭୟଙ୍କର ଝଣାଓଝଣି ଚାଲିଲା । ପରିଶେଷକୁ ପଦ୍ମନାଭ ଗୁଣିଙ୍କୁ ପେଲି-ଦେଲେ । ଗୁଣି ପଡ଼ିଗଲେ, ମାତ୍ର ହଠାତ୍ ଉଠି ପଦ୍ମନାଭଙ୍କୁ କୁଣ୍ଢାଇ ପକାଇ କହିଲେ, 'ଭାଇ, ଆଜିଠାରୁ ଗୁଣି ଖସିଲେ ।' ଉଭୟ ମଲ୍ଲଙ୍କର କେତେ ଦିନ ଆନନ୍ଦରେ କଟିଗଲା । ସେହି ଦିନଠାରୁ ଗୁଣି **ଆଉ** ଆଖଡ଼ାକୁ ଆସିଲେ ନାହିଁ । ମାତ୍ର ସାହିତ୍ୟ କ୍ଷେତ୍ରରେ ତାଙ୍କର ଉଦୟ କବି-ଜୀବନକୁ ଆହୁରି ମୁଖ୍ୟ କରାଇଦେଲା । ସାହିତ୍ୟ-ଗଗନରେ ଚନ୍ଦନ ହଜୁରୀ ନାମରେ ଏକ ଉଜ୍ଜ୍ୱଳ ନକ୍ଷତ୍ରର ଉଦୟ ହେଲା ।

ସାହିତ୍ୟସେବୀ, ଭାବୁକ, କବି, ଚନ୍ଦନ ହଜୁରୀ ଜଗନ୍ନାଥଙ୍କର ଗୋଟିଏ ଜଣାଣ ଯୁଦ୍ଧକୁ ଯିବା ପୂର୍ବରୁ ଲେଖିଥିଲେ; ମାତ୍ର ବିଶ୍ରାମ ଗ୍ରହଣ କରିବା ମାତ୍ରେ ସେ 'ମନୁ ବାଈ' ନାମକ କାବ୍ୟ ଲେଖିଲେ । ଏହି କାବ୍ୟଟି ସିପାହି-ବିଦ୍ରୋହ ତଥା ଲକ୍ଷ୍ମୀ-ବାଈଙ୍କ ବିଷୟରେ ଲେଖା । ଏହାର କେତେକାଂଶ ଏବେ ମଧ୍ୟ ମିଳି ନାହିଁ । ଏହାଛଡ଼ା ତାଙ୍କର କେତେଖଣ୍ଡି ଚଉତିଶା ଓ ଭଜନ ମିଳେ, ଯେଉଁଗୁଡ଼ିକର ସାହିତ୍ୟିକ ମୂଲ୍ୟ ଯଥେଷ୍ଟ ବେଶି । ସେଥିରେ ଜଗନ୍ନାଥଙ୍କୁ ସେ ନିଜର ପ୍ରଭୁ ବୋଲି ଅତି ଦୃଢ଼ ଭକ୍ତି ଦେଖାଇଛନ୍ତି ଏବଂ ଅତି ଆତ୍ମୀୟ ଭାବରେ ତାଙ୍କୁ ନାନା ଅନୁରୋଧ ତଥା ଦାବୀ ଜଣାଇଛନ୍ତି । ସେ କେତେଗୁଡ଼ିଏ ତଗଡମାଳି ମଧ୍ୟ ରଚନା କରିଥିଲେ । ମାତ୍ର ତାହାର ସତ୍ତା ମିଳୁ ନାହିଁ । ମୂଳତଃ ଚନ୍ଦନ ହଜୁରୀଙ୍କର ଉତ୍ତର ଜୀବନର ଶେଷ ପାଦଟି କେବଳ ବାଣୀ ମାଧବଙ୍କର ଆରାଧନାରେ କଟିଯାଇଥିଲା । ଚନ୍ଦନ ହଜୁରୀଙ୍କର ଦୀର୍ଘ ୬୫ ବର୍ଷର ସାଧନା ଫଳରେ ଉତ୍କଳ ଗୋଟିଏ ବୀର ସନ୍ତାନ ଓ ଗୋଟିଏ

ଭବ ସନ୍ତାନ ପାଇଥିଲ । କାଳର ନିୟମରେ ୧୮୭୦ ବୈଶାଖ ଶୁକ୍ଳ ଅଷ୍ଟମୀ ତିଥିରେ ତାଙ୍କର ମହାପ୍ରୟାଣ ହୋଇଥିଲ ।

ଉପସଂହାରରେ ଏତିକି କୁହାଯାଇପାରେ ଯେ, ତାଙ୍କର ଦୁର୍ଭାଗ୍ୟ ହେଉ ବା ଜାତିର ଦୁର୍ଭାଗ୍ୟ ହେଉ, ତାଙ୍କ ବିଷୟରେ ବିଶେଷ କିଛି ସଂଗୃହୀତ ହୋଇ ନାହିଁ । ୰ଜଗବନ୍ଧୁ ସିଂହଙ୍କର ଆଶୀର୍ବାଦ ଓ ପ୍ରେରଣାରୁ ଯାହା କେତେକ ଦଲିଲ ଦସ୍ତାବେଜ ସଂଗୃହୀତ ହୋଇଅଛି । ବିଶେଷରେ ତାଙ୍କର ସହକର୍ମୀ ହାଡ଼ୁ ମହାନ୍ତି ଓ ସମକାଳୀନ ବିଶିଷ୍ଟ ବ୍ୟକ୍ତି ୰ବିଷ୍ଣୁଚରଣ ରାମାନୁଜ ଦାସ ଯେ କି ୧୧୩ ବର୍ଷ ବୟସରେ ନିକଟରେ ପରଲୋକ ପ୍ରାପ୍ତ ହୋଇଅଛନ୍ତି, ତାଙ୍କର ଲିଖିତ ମନ୍ତବ୍ୟରୁ ପୁଣି ଝାନ୍ସି, କାଲକାଙ୍କରର ବୃଦ୍ଧମାନଙ୍କଠାରୁ ତାଙ୍କର ଅତୁଳନୀୟ ବଳବୀର୍ଯ୍ୟର ଯେଉଁ ପରିଚୟ ମିଳେ, ତାହା ଓଡ଼ିଶାର ଦ୍ୱିତୀୟ ବ୍ୟକ୍ତିଙ୍କଠାରେ ସମ୍ଭବ ହୋଇ ନାହିଁ । ତାଙ୍କର ଉଚ୍ଚତା ଫୁ ୫।୨ ଇଞ୍ଚ ଥିଲ । ତାଙ୍କ ବ୍ୟବହୃତ ଅସ୍ତ୍ରଶସ୍ତ୍ର, ଓଟି, ବାସନ ପ୍ରଭୃତି ଦେଖିଲେ ସେ ଜନବଂଶ ଶତକର ଭୀମ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆଜି ହଜୁରୀ ପରିବାର କେବଳ ଯାତ୍ରୀମାନଙ୍କର ଧର୍ମବିଶ୍ୱାସ ଧରି ପଡ଼ିରହିଛନ୍ତି; ମାତ୍ର ଥରେ ମଧ୍ୟଭାରତ ବୁଲି ଆସିଲେ ଏବେ ମଧ୍ୟ ସହସ୍ର ସହସ୍ର ମୁଖରୁ ଯେଉଁ ବୀରତ୍ୱ ପ୍ରସଙ୍ଗ ଦେହନ ହଜୁରୀଙ୍କ ବିଷୟରେ ଶୁଣାଯାଏ, ତାହା ଶୁଣିଲେ ଏ ଦେଶର ଅତୀତ ଯେ କେଡ଼େ ଉଜ୍ଜ୍ୱଳ ଥିଲା ତାହା ଜଣାପଡ଼େ । ଈଶ୍ୱର-କୃପା ବିନା କୌଣସି ମାର୍ଗ ସଫଳ ହୁଏ ନାହିଁ । ନିଜର ପରିଶ୍ରମ ସହ କୃପା ଲଭ ହୁଏ । କେବଳ କାର୍ଯ୍ୟ କରିବାର ପ୍ରବୃତ୍ତି ତାଙ୍କ ପରି ସାଧାରଣ ବ୍ୟକ୍ତିଙ୍କୁ ଜାତୀୟ ମାନବରେ ପରିଣତ କରି-ପାରିଥିଲା, ଯାହାଙ୍କ ଐତିହାସିକ ସତ୍ୟରେ ଦିନେ ପ୍ରମାଣିତ ହେବ,

ତେଣୁ ସେହି କର୍ମଶକ୍ତିକୁହିଁ ନମସ୍କାର, ଯେଉଁ କର୍ମ ବଳରେ ଚନ୍ଦନ ହଜୁରୀ ଏକାଧାରରେ ମଲ୍ଲ, ବୁଦ୍ଧିମାନ୍, କବି, ଓ ଭକ୍ତ ଭାବରେ ଅମ୍ଭମାନଙ୍କ ସମ୍ମୁଖରେ ଏକ ଆଦର୍ଶ ରଖି ଯାଇ-ଅଛନ୍ତି ।



ମୁଦ୍ରାକର ଶ୍ରୀ କିଶୋରଚନ୍ଦ୍ର ମିଶ୍ର, କବିତା ପ୍ରେସ, କଟକ--୧ ।

